ମନପବନ ଡଙ୍ଗାରେ ବସି
ସାତ ଦରିଆ ଯିବି ମୁଁ ଭାସି
ଜେମ୍ସ ଭରି ଫେରନ୍ତି ମୁଇଁ
କିଛି ତମ ପାଇଁ ଆଉ ବାକିତକ ନିଜ ପାଇଁ !

GEMS



"ଜେମ୍ସ ସବୁରି ପ୍ରିୟ-ତା ପାଇଁ ଅଛି ସମୟ ହି ସମୟ!"

**କ୍ୟାଡବରିଜ**
ଚକୋଲେଟ୍

କ୍ୟାଡବରିଜ ଜେମ୍ସ ଏତେ ବଢ଼ିଆ, ମିଠା ମିଠା ସପନ ଭଳିଆ!

# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'

ସଞ୍ଚାଳକ : ନାଗି ରେଡ୍‌ଡ଼ୀ

'ଜହ୍ନମାମୁଁ' ଏହି ସଂଖ୍ୟାରୁ ସପ୍ତଦଶ ବର୍ଷରେ ପଦାର୍ପଣ କରୁଛି । ଏହି ଅବସରରେ ସେ ତାର ପ୍ରିୟ ପାଠକମାନଙ୍କୁ ଅଭିନନ୍ଦନ ଜଣାଉଛି । ଶିଶୁ ଓ ତରୁଣମାନଙ୍କ ମନୋରଞ୍ଜନ ସଙ୍ଗେ ସଙ୍ଗେ ସେମାନଙ୍କୁ ଶିକ୍ଷାର ଆଲୋକ ଦେବାରେ 'ଜହ୍ନମାମୁଁ' ନିଜର ଚେଷ୍ଟାରେ ତ୍ରୁଟି କରିବ ନାହିଁ ।

## ଅମର ବାଣୀ

ଅଲ୍ପୋଽଧିକାରଲ୍ଲବ୍ଧ୍ୱା ସ୍ୱାମିନୋ ବ୍ୟତିରିଚ୍ୟତେ ।
ବାଲୁକୋଷ୍ମତ୍ୱମତ୍ୟୁଗ୍ରଂ ବିବସ୍ୱତ୍ତାପନାଦପି ॥

[ କ୍ଷୁଦ୍ରମତି ମଣିଷ ଅଧିକାର ପାଇଲେ ତା ମାଲିକଠୁଁ ବଳି ପ୍ରତାପ ଦେଖାଏ । ସୂର୍ଯ୍ୟକିରଣରେ ଉତପ୍ତ ବାଲୁକା ସୂର୍ଯ୍ୟତାପଠୁଁ ବେଶି କଷ୍ଟ ଦିଏ । ]

ବର୍ଷ : ୧୭ ଜୁଲାଇ ୧୯୮୩ ଅଙ୍କ : ୧

ପ୍ରତିସଂଖ୍ୟା : ଟ ୧.୦୦ :: ବାର୍ଷିକ ମୂଲ୍ୟ : ଟ ୧୪.୦୦








# ସତ ମିଛ

କନକପୁରର ବଟୁ ପ୍ରଧାନ ଥିଲା ଭୀଷଣ କୃପଣ । ଅନ୍ୟ ପାଇଁ ଟଙ୍କା ଖର୍ଚ୍ଚ କରିବା ତ ଦୂରର କଥା, ନିଜ ପାଇଁ ମଧ୍ୟ ସେ କାଣି କଉଡ଼ିଟାଏ ଖର୍ଚ୍ଚ କରେ ନାହିଁ ।

ସେ ବିଭା ହେଲା । ସ୍ତ୍ରୀର ନାମ ଶୋଭା । ସେ ସାଧାରଣ ଘରର ଝିଅ । କିନ୍ତୁ ତା' ବାପ ଘରେ ଖିଆପିଆରେ ବେଶ୍ ଖର୍ଚ୍ଚ ହେଉଥିଲା । ସେ ଭଲ ଖାଇବାରେ ଅଭ୍ୟସ୍ତ ଥିଲା । ସ୍ୱାମୀ ଘରକୁ ଆସି ଦେଖିଲା, ସେଠି ସଦ୍ଧ ଟିକିଏ ଆଗୁର ମାଣ୍ଡ ଖାଇବାକୁ ମିଳୁଛି । ଘର ପଛପଟ ସାମାନ୍ୟ ବାଡ଼ିରେ ଯେତିକି ଶାଗପନି ହୁଏ, ସେତିକିରେ ଯେତିକି ଯାହା ରନ୍ଧାରନ୍ଧି ସମ୍ଭବ ସେତିକି କରିବା ସକାଶେ ବଟୁ ତାକୁ ହୁକୁମ ଦେଇଥାଏ ।

ବଟୁ ମହାଜନ କାରବାର ସାଙ୍ଗକୁ ଗୋଟାଏ ଦୋକାନ ବି କରିଥାଏ । ଅଧିକାଂଶ ସମୟ ତାକୁ ଘର ବାହାରେ କଟାଇବାକୁ ହୁଏ ।

ଦିନେ ରାତିରେ ସେ ଘରକୁ ଲେଉଟି ଆସିବାର ଶବ୍ଦ ଶୁଣି ଶୋଭା କବାଟ ଖୋଲି ଦେଲା । ଲଣ୍ଠନ ଆଲୁଅରେ ତା' ନାକରେ ଲାଗିଥିବା ଶ୍ରେଷ୍ଠ ସୁନା ଅଳଙ୍କାରଟିଏ ଚକ୍‌ମକ୍ କରି ଉଠିଲା । ବଟୁ ପଚାରିଲା, ଇଏ କ'ଣ ? ଏ ଜିନିଷ କିଣିବାକୁ ଟଙ୍କା ପାଇଲ କେଉଁଠୁ ?"

"ଆଗେ ଭିତରକୁ ଆସ । ତା'ପରେ କହିବି ।" ଏହା କହି ଶୋଭା କବାଟ ବନ୍ଦ କରି ଦେଲା ।

"କ'ଣ କହିବ କୁହ !" ଧମକ ଦେଲା ଢଙ୍ଗରେ ପଚାରିଲା ବଟୁ ।

"ଯାହା ଯାହା ଘଟିଲା, ସବୁ ଠିକ୍-ଠାକ୍ କହୁଛି, ଶୁଣ । ଆମ ଘର ପଛ

ସୁଭାଷ ଚନ୍ଦ୍ର



ପଛରେ ଯେଉଁ ତେନ୍ତୁଳି ଗଛ ଅଛି, ଆଜି ସଞ୍ଜବେଳେ ସେଥିରୁ ବାହାରି ଆସିଲା ଗୋଟାଏ ପିଶାଚୁଣୀ । ମୁଁ ବାଡ଼ିଆଡ଼େ ଅନାଇ ପଛ କବାଟ ପାଖରେ ଠିଆ ହୋଇଥାଏ । ମୋ ପାଖକୁ ଆସି ସେ କହିଲା, 'ଝିଅ, ତୋ ଚେହେରା ଦେଖି ବୁଝିପାରୁଛି ତୋତେ ଭଲ ମିଠେଇ କରି ଆସେ । ମୋତେ କିଛି ଦେଲୁ ! ମୁଁ କୋଡ଼ିଏ ବର୍ଷ ହେଲା ଭଲ ଜିନିଷ ଖାଇ ନାହିଁ ।' ମୁଁ ସବୁଦିନ ଦୁଧରୁ କିଛି କିଛି ସାଇତି ଖୁଆ କରି ରଖିଥିଲି ତମ ପାଇଁ । ସେଥିରୁ କିଛି ନେଇ ଥାଳିଆରେ ତେନ୍ତୁଳି ଗଛ ତଳେ ଥୋଇଦେଲି । କିଛି ସମୟ ପରେ ଥାଳିଆ ଆଣିବାକୁ ଯାଇ ଦେଖେ ତ ତହିଁ ଉପରେ ଏ ଅଳଙ୍କାରଟି ଥୁଆ ହୋଇଛି ।" ଶୋଭା ଗପିଲା । ସେ ଯେଉଁ ମିଠେଇ ତିଆରି କରିଥିଲା, ସେଥିରୁ କିଛି ଆଣି ବଟୁକୁ ଦେଲା । ବଟୁ ତାକୁ ଖାଇ କହିଲା, "ବାଃ, ଚମତ୍କାର ହୋଇଛି । ଆଗାମୀ କାଲି କିଛି ଅଧିକା ଦୁଧ ପଡ଼ୋଶୀ ଘରୁ କିଣି ଆଣ । ବେଶି ମିଠେଇ ତିଆରି କରି ପିଶାଚୁଣୀକୁ ଦିଅ । ପୁଣି ସେ ଗୋଟାଏ ମୂଲ୍ୟବାନ୍ ଚିଜ ଦେଇପାରେ । ହଁ, ମୋ ପାଇଁ ବି କିଛି ମିଠେଇ ରଖିବ ।"

ତେଣିକି ମଧ୍ୟେ ମଧ୍ୟେ ଭଲ ଖାଦ୍ୟ ପଦାର୍ଥ ପ୍ରସ୍ତୁତ କରି ପିଶାଚୁଣୀକୁ ଦେବା ନିମନ୍ତେ ବଟୁ ନିଜେ ଶୋଭାକୁ ଉତ୍ସାହ ଦେଲା । କିଛି ଦିନ ପରେ ଶୋଭା ହାତରେ ହଳେ କଙ୍କଣ ନାଇଥିବାର ଦେଖାଗଲା । ସେ କହିଲା କି ତାହା ମଧ୍ୟ ପିଶାଚୁଣୀର ଦାନ ।

ଦିନେ ଦିନେ ସନ୍ଧ୍ୟାବେଳେ ବଟୁ ଯାଇ ତେନ୍ତୁଳି ଗଛ ତଳେ ଠିଆ ହୋଇ ଗୁଣୁ ଗୁଣୁ କରି କହେ, "ପିଶାଚୁଣୀ ! ଥରେ ମୋତେ ଦେଖା ଦିଅନ୍ତୁ ନାହିଁ ? ମୋତେ ବି କିଛି ବରାଦ କଲେ କରି ଦିଅନ୍ତୁ !"



କିନ୍ତୁ ପିଶାଚୁଣୀକୁ ସେ ଦେଖି ପାରେ ନାହିଁ । ହତାଶ ହୋଇ ଲେଉଟି ଆସେ ।

ସେ ମନେ ମନେ ଭାବିଲା, ଯେତେବେଳେ ଶୋଭା ପିଶାଚୁଣୀକୁ ନେଇ ଖାଇବାକୁ ଦେବ, ସେତେବେଳେ ଲୁଚି ରହି ଲକ୍ଷ୍ୟ କଲେ ଅବଶ୍ୟ ପିଶାଚୁଣୀକୁ ଦେଖି ହେବ । ଯେତେବେଳେ ହେଲେ ବି ତ ପିଶାଚୁଣୀ ଖାଇବାକୁ ଗଛରୁ ଓହ୍ଲାଇ ତଳକୁ ଆସିବ !

ସେ ଶୋଭାକୁ ସନ୍ଧ୍ୟାବେଳେ କହିଲା, "ଆଜ ରାତିରେ ମୁଁ ଫେରି ପାରିବି କି ନାହିଁ ଠିକ୍ ନାହିଁ । ଆସିଲେ ବି ବହୁତ ବିଳମ୍ବରେ ଆସିବି । ପିଶାଚୁଣୀ ପାଇଁ ଆଜି କିଛି ତିଆରି କରୁଛ କି ? ଆଜି ଶନିବାର । ହୁଏତ ତା'ର କିଛି ଖାଇବାକୁ ମନ ହେଉଥିବ ।"

"ହଁ, ଆଜି କ୍ଷୀରି ତିଆରି କଲେ ହେବ ।" କହିଲା ଶୋଭା । ପଡ଼ୋଶୀ ଘରକୁ ସେ ଦୁଧ କିଣିବାକୁ ବାହାରିଗଲା ବେଳେ ବଟୁ ବି ଘରୁ ବାହାରି ଗଲା ଭଳି ଅଭିନୟ କଲା । କିନ୍ତୁ ଫେରି ଆସି ଘର ଭିତରେ ଥିବା ଖାଡ଼ ଉପରେ ବସିଲା । ଶୋଭା ଯେତେବେଳେ ତେନ୍ତୁଳି ଗଛ ପାଖକୁ ଯିବ, ସେ ତା'ର ଅନୁସରଣ କରିବ, ଏଇଆ ହେଲା ଉଦ୍ଦେଶ୍ୟ ।

ଶୋଭା ଦୁଧ ନେଇ ଆସି କ୍ଷୀରି ପ୍ରସ୍ତୁତ କଲା । ତା'ପରେ ସେଥିରୁ ଅଧାରୁ ବେଶୀ ବଟୁ ସକାଶେ ଗୋଟିଏ ପାତ୍ରରେ ଓଜାଡ଼ି ରଖିଲା । ବାକିତକ ବସି ନିଜେ ଖାଇଲା ।

ଯେତେବେଳେ ବଟୁ ଦେଖିଲା ଶୋଭା ପିଶାଚୁଣୀ ପାଇଁ କିଛି ନେଲା ନାହିଁ, ତା'ର ଧାରଣା ହେଲା ପିଶାଚୁଣୀ କଥା ବିଲ୍‌କୁଲ୍ ମିଛ । ସେ ଖାଡ଼ ଉପରୁ ତଳକୁ ଡେଇଁ ପଡ଼ିଲା । ଶୋଭା ଭୂତ ଦେଖିଲା ଭଳି ଚମକି ପଡ଼ିଲା ।

"ତମେ ପିଶାଚୁଣୀ ନାମରେ ମୋତେ ଆଜଯାଏ ଧୋକା ଦେଉଥିଲ !" ସେ ଗର୍ଜନ

କରି ପଚାରିଲା ।

ଶୋଭାର ଚେହେରା ଶେତା ପଡ଼ିଗଲା । ସେ ଭୟରେ ଥରିଲା ।

ହଠାତ୍ ଗୋଟିଏ ଆନୁନାସିକ କଣ୍ଠସ୍ୱର ଶୁଭିଲା, "ଶ୍ଳେପ୍ ! ମୋର ଅସ୍ତିତ୍ୱ ଅସ୍ୱୀକାର କରୁଛୁ, ତୋର ଏଡ଼େ ବହପ ?"

ଚମକିପଡ଼ି ବଟୁ ଶୋଭା ପଛକୁ ଅନାଇଲା । ଶୋଭା ବି ଅନାଇ ଦେଖିଲା, ଗୋଟାଏ ଅଶରୀରୀ ଆକୃତି ଦେଖାଯାଉଛି । ସେ ଆକୃତି କହିଲା, "ମୋର ତ ଦେହ ନାହିଁ । ମୁଁ କ୍ଷୀର ଖାଇବି କିପରି ? ମୁଁ ସିନା ଦେହ ଥିବା କୌଣସି ମଣିଷ ଜରିଆରେ ଖାଇବି ! ମୁଁ ଶୋଭା ଜରିଆରେ ଖାଉଛି !"

"ବୁଝିଲି, ବୁଝିଲି !" କାକୁସ୍ଥ ହୋଇ ବଟୁ କହିଲା ।

"ଶୁଣ ମୂର୍ଖ ! ମୁଁ କାହିଁକି ପିଶାଚୁଣୀ ହୋଇଛି ଜାଣିଛୁ ? ମୁଁ ଯେତେବେଳେ ମୋ ଘର ମାଲିକାଣି ଥିଲି, ସେତେବେଳେ ଗୋଟାଏ କପର୍ଦ୍ଦକ ବି କାହାକୁ ଖର୍ଚ୍ଚ କରିବାକୁ ଦେଉ ନଥିଲି । ସବୁ ସାଇତି ରଖୁଥିଲି । ହଠାତ୍ ଦିନେ ମରିଗଲି । ସବୁ ଆଶା ଅପୂର୍ଣ୍ଣ ରହିଗଲା । ପିଶାଚୁଣୀ ହୋଇ ବସିଛି । ତୋର ବି ସେଇ ଦଶା ହେବ । କିନ୍ତୁ ଖବରଦାର, ଏ ତେନ୍ତୁଳି ଗଛରେ ତୋତେ ଠାଇଁ ଦେବି ନାହିଁ । ତୁ ଯାଇ ମଶାଣି ପାଖ ଗଛରେ ରହିବୁ—ଅନ୍ୟ



ସାଧାରଣ ଭୂତପ୍ରେତମାନଙ୍କ ସାଙ୍ଗରେ । ସେମାନେ ତୋତେ ହଲବଲ କରିବେ । ତେବେ ଯାଇ କୃପଣ ହେବାର ମଜା ପାଇବୁ । ମୋ ତେନ୍ତୁଳି ଗଛକୁ ଆସିଲେ ତୋତେ ଏମିତି ଯନ୍ତ୍ରଣା ଦେବି ଯେ ତୁ କଳ୍ପନା କରି ପାରିବୁ ନାହିଁ । ବୁଝିଲୁ ?"

ଏହା କହି ପିଶାଚୁଣୀ ଅଦୃଶ୍ୟ ହୋଇ ଗଲା ।

ବଟୁ ଅନେକ ବେଳଯାଏ କଥା କହି-ପାରିଲା ନାହିଁ । ଶୋଭା ତାକୁ ପାଣି ଆଣି ପିଆଇଲା । ତା'ପରେ କ୍ଷୀର ଖାଇବାକୁ ଦେଲା । ବଟୁ ଧୀରେ ଧୀରେ କହିଲା, "ପିଶାଚୁଣୀ ବାସ୍ତବିକ ମୋ ଆଖି ଖୋଲି-ଦେଲା । ମୁଁ ମୂର୍ଖ । କାହିଁକି ପଇସା ଗୁଡ଼ା ରଖୁଛି ? କେତେବେଳେ ମରିବି ଠିକ୍ ନାହିଁ । କାଲିଠୁ ଭଲ ଭାବରେ ଖିଆପିଆ କରାଯାଉ । ଦାନ ଧର୍ମ ବି କରାଯାଉ ।"

ପ୍ରକୃତରେ ପରଦିନଠାରୁ ବଟୁ ଭିନ୍ନ ପ୍ରକାର ଆଚରଣ କରିବାକୁ ଲାଗିଲା । ମଧ୍ୟେ ମଧ୍ୟେ ସେ ବାଡ଼ି ପଛପଟ ତେନ୍ତୁଳି ଗଛ ପାଖକୁ ଯାଏ ଏବଂ ରାମନାମ ଜପ କରି ସେଠାରେ ଥିବା ପିଶାଚୁଣୀର ମୁକ୍ତି ପାଇଁ ପ୍ରାର୍ଥନା କରେ ।

ଶୋଭାର ବିସ୍ମୟର ସୀମା ନଥିଲା । ତେବେ ସେ ତାହା ପ୍ରକାଶ କଲା ନାହିଁ । ସତରେ ପିଶାଚୁଣୀ ଥିଲା ଏବଂ ବିପଦବେଳେ ତା' ସହାୟତା କରିବ, ଏକଥା ସେ କଳ୍ପନା କରି ନଥିଲା । ସେ ଯେଉଁ ଅଳଙ୍କାର ଲଗାଇଥିଲା, ତାହା ନକଲି । ତେବେ ସବୁ କଥା ବହୁଦିନ ପରେ ସେ ବଟୁକୁ ଖୋଲି କହିଦେଲା । ସେତେବେଳକୁ ବଟୁର ସ୍ୱଭାବ ପୂରା ବଦଳି ଯାଇଥାଏ ।






ପ୍ରାଚୀନ କାଳରେ ଅବନ୍ତୀ ନଗରୀରେ ରହୁଥିଲେ ଜଣେ ବୃଦ୍ଧ ବଣିକ । ତାଙ୍କର ତିନିଜଣ ପୁଅଥିଲେ । ସେମାନଙ୍କ ନାମ, ଜୀବଦତ୍ତ, ଲକ୍ଷଦତ୍ତ ଓ ପିଙ୍ଗଳ ।

ବଣିକ ଯେତେବେଳେ ବୃଦ୍ଧ ହେଲେ ଓ ବୁଝିପାରିଲେ ଯେ ସେ ଆଉ ବେଶିଦିନ ଏ ସଂସାରରେ ରହିବେ ନାହିଁ, ସେତେବେଳେ ସେ ପୁଅମାନଙ୍କୁ ନିଜ ବେପାର ବଣିଜର ଦାୟିତ୍ୱ ବୁଝାଇ ଦେବାକୁ ମନକଲେ । କିନ୍ତୁ ଦୁର୍ଭାଗ୍ୟର କଥା ହେଲା, ତାଙ୍କର ଦୁଇ ବଡ଼ପୁଅ ଅତ୍ୟନ୍ତ ଅଯୋଗ୍ୟ ଥିଲେ । ସବୁବେଳେ କୁସଙ୍ଗରେ ମିଶି, ଫୁର୍ତ୍ତି କରି ବାପାର ଟଙ୍କା ଉଡ଼ାଇବାରେ ସେମାନଙ୍କ ସମୟ ଯାଉଥିଲା । ସାନପୁଅ ଖୁବ୍ ଧୀରସ୍ଥିର ବୋଲି ବଣିକ ବୁଝୁଥିଲେ । କିନ୍ତୁ ଯେତେହେଲେ ସେ ସାନ । ତା' ଉପରେ ସେ ବିଶେଷ ଭରସା ରଖିପାରୁ ନଥିଲେ ।

ସେ ଅନେକ ଭାବଚିନ୍ତା ଓ ନିଜର ଜଣେ ଅତି ବିଶ୍ୱସ୍ତ ବନ୍ଧୁଙ୍କ ସହ ପରାମର୍ଶ କରି ଗୋଟାଏ ବ୍ୟବସ୍ଥା କଲେ ।

ସେ ନିଜ ସମ୍ପତ୍ତିକୁ ଚାରିଭାଗ କରି ସ୍ତ୍ରୀକୁ ଗୋଟିଏ ଭାଗ ଦେଲେ ଓ ତିନିପୁଅ ନାମରେ ଆଉ ତିନିଭାଗ ଲେଖିଦେଲେ ।

ବଡ଼ପୁଅ ଦୁଇଜଣ ଏ ବ୍ୟବସ୍ଥା ପସନ୍ଦ କଲେ ନାହିଁ, କିନ୍ତୁ କିଛି କହିପାରିଲେ ନାହିଁ ।

ଏହାର କିଛିଦିନ ଉତ୍ତାରୁ ତାଙ୍କର ଦେହାନ୍ତ ହୋଇଗଲା । ତାଙ୍କ ଅନ୍ତ୍ୟେଷ୍ଟି କ୍ରିୟା ସମାପ୍ତ ହେବା ପୂର୍ବରୁ ହିଁ ଦୁଇ ବଡ଼ ପୁଅ ନିଜ ନିଜ



ଘରର ସମ୍ପତ୍ତି ଉଡ଼ାଇବାକୁ ଲାଗିଗଲେ। ସେମାନଙ୍କ ମା ବହୁତ ବ୍ୟଥିତ ହେଲେ। କିନ୍ତୁ କ'ଣ ବା କରିବେ? ଦୁଇଜଣଯାକ ପୁଅଙ୍କୁ ଯେତେ ବୁଝାଇଲେ, ଯେତେ ପ୍ରକାରେ ସେମାନଙ୍କ ଭିତରେ ସଦ୍‌ବୁଦ୍ଧିର ବିକାଶ ନିମନ୍ତେ ଚେଷ୍ଟା କଲେ, ସବୁ ନିଷ୍ଫଳ ହେଲା।

ମା ସେଥିରୁ ବିରକ୍ତ ହୋଇ ନିଜ ସମ୍ପତ୍ତି ଧରି ସାନପୁଅ ପିଙ୍ଗଳ ପାଖରେ ରହିଲେ।

ଏଣେ ନିଜ ନିଜ ସମ୍ପତ୍ତି ଉଡ଼ିଯିବା ପରେ ଜୀବଦତ୍ତ ଓ ଲକ୍ଷଦତ୍ତ ଯାଇ ପିଙ୍ଗଳ ଘରେ ପହଞ୍ଚିଲେ। ପିଙ୍ଗଳ ସେମାନଙ୍କୁ ସ୍ୱାଗତ କଲା, କିନ୍ତୁ ସେମାନେ ତାକୁ କୌଣସି ସୌଜନ୍ୟ ନ ଦେଖାଇ ସିଧା ଯାଇ ମା'ଙ୍କ ପାଖରେ ପହଞ୍ଚିଲେ ଓ କହିଲେ, "ମା, ତମେ ଆମମାନଙ୍କ ସାଥିରେ ରହିବା କିନା ସୁନ୍ଦର ହେବ! ଚାଲ।"

ମା ଥିଲେ ବୁଦ୍ଧିମତୀ। ସେ ବୁଝିପାରିଲେ, ଦୁଇଜଣଯାକ ନିଜ ନିଜ ସମ୍ପତ୍ତି ଶେଷ କରି ସାରିଲେଣି। ବର୍ତ୍ତମାନ ତାଙ୍କ ଭାଗରେ ଥିବା ସମ୍ପତ୍ତି ଉପରେ ଆଖି ପଡ଼ିଛି। ତାଙ୍କୁ ନେଇ ପାଖରେ ରଖିଲେ ସେତକ ଉଡ଼ାଇବା ସମ୍ଭବ ହେବ, ତେଣୁ ଏ ଅନୁରୋଧ।

"ମା, ଆମ ଭଳି ଦୁଇ ରୋଜଗାରିଆ ପୁଅ ଥାଉଁ ଥାଉଁ ତମେ ସବା ସାନ ପୁଅ ପାଖରେ ରହିବା ଅସୁନ୍ଦର ହେଉଛି। ଆମେ କ'ଣ ତୁମ ଚଳନ୍ତି ନେବାକୁ ଅକ୍ଷମ? ଆମେ କ'ଣ ଅଯୋଗ୍ୟ? କିନ୍ତୁ ଲୋକେ ତ ସେଇଆ ଭାବିବେ! ଚାଲ, ଆମ ପାଖରେ ରହିବ। ଆମେ ତମକୁ ସୁଖରେ ରଖିବୁଁ।" ଦୁଇ ବଡ଼ ପୁଅ ବୁଝାଇ କହିଲେ।

ମା କହିଲେ, "ତମମାନଙ୍କ ପାଖରେ ରହନ୍ତି ଯେ, କିନ୍ତୁ ପିଙ୍ଗଳ ଯେତେହେଲେ ସାନ। ସେ କିଛି ଶିଖିନାହିଁ। ତା'ର ଦେଖାଶୁଣା କରିବା ମୋର କର୍ତ୍ତବ୍ୟ ନୁହେଁ କି? ତମମାନଙ୍କର ତ କେବେଠାରୁ ମୁଣ୍ଡକୁ ହାତ ପାଇ ଗଲାଣି। ମୋ ସାହାଯ୍ୟ କ'ଣ ଦରକାର?"

ଏଥର ଦୁଇ ବଡ଼ ପୁଅ ଛଳନା ଛାଡ଼ି ସିଧା ସଳଖ କହିଲେ, "ହଉ, ତୁମେ ସାନ ପୁଅ ପାଖରେ ରୁହ। କିନ୍ତୁ ତମ ଭାଗ ସମ୍ପତ୍ତିରୁ ଆମ ଅଂଶତକ ଦେଇଦିଅ।"




"ସିଏ କିପରି କଥା? ଯଦି ତୁମମାନଙ୍କୁ ଦେଇଦେବି, ତେବେ ତୁମମାନଙ୍କ ବାପା ମୋତେ ସେତିକି ଦେଇଥିଲେ କାହିଁକି? ମୋ ମୃତ୍ୟୁ ପରେ ଅବଶ୍ୟ ତମେ ତିନିଜଣ-ଯାକ ମୋ ସମ୍ପତ୍ତିକୁ ତିନିଭାଗ କରି ବାଣ୍ଟି ନେବ।"

"ମା! ପିଙ୍ଗଳ ଉପରେ ଆମର ବିଶ୍ୱାସ ନାହିଁ। ସେ ତୁମ ସମ୍ପତ୍ତି ମାରି ନେବ। ଆମକୁ ଭାଗ ଦେବ ନାହିଁ। ତମେ ଥିବା ଅବସ୍ଥାରେ ଆମକୁ ଦେଇ ପକାଅ।" ଦୁଇଜଣ ଜିଗର କରି କହିଲେ।

ପିଙ୍ଗଳ ମା'ଙ୍କୁ ଚୁପି ଚୁପି କହିଲା, "ମା, ତୁମେ ଯଦି ସେମାନଙ୍କ ପାଖରେ ଯାଇ ରହିବ, ତେବେ ସେମାନେ ଏପରି ଅଡ଼ି ଧରି ବସିବେ ନାହିଁ। ସେଇଆ କର। ତୁମ ସମ୍ପତ୍ତି ସେ ଦୁଇଜଣ ନିଅନ୍ତୁ। ମୋର ସେଥିରୁ ଭାଗ ଲୋଡ଼ା ନାହିଁ।"

କିନ୍ତୁ ମା ପିଙ୍ଗଳର ପ୍ରସ୍ତାବରେ ସମ୍ମତ ହେଲେ ନାହିଁ। ସେ ଦୁଇ ବଡ଼ ପୁଅଙ୍କୁ ସିଧା କହିଦେଲେ କି ବର୍ତ୍ତମାନ ତାଙ୍କ ସମ୍ପତ୍ତିରୁ ଭାଗଦେବା ସମ୍ଭବ ନୁହେଁ।

"ତମକୁ ଦେବାକୁ ହେବ। ନ ଦେଲେ ଆମେ ଛାଡ଼ିବୁଁ ନାହିଁ। ତମ ସମ୍ପତ୍ତି ଉପରେ ଆମର ନ୍ୟାଯ୍ୟ ଅଧିକାର। ଆମ କଥା ନ ମାନିଲେ ଅନୁତାପ କରିବାକୁ ହେବ!" ଦୁଇ ପୁଅ ଚିତ୍କାର କରି କହିଲେ।

"ମା ପ୍ରତି ତମମାନଙ୍କର ଶ୍ରଦ୍ଧା ଏହିପରି ପରା! ତମେ ପରା ମୋତେ ସୁଖରେ ରଖିବ ବୋଲି କହୁଥିଲ?" ମା ଦୁଃଖ ଓ କ୍ରୋଧରେ ପଚାରିଲେ।

ରାଗିଯାଇ ସେ ଦୁଇ ଅଧମ ପୁଅ ମାଙ୍କୁ ପିଟିବାକୁ ଲାଗିଲେ। ଆଶ୍ଚର୍ଯ୍ୟ ଓ ମର୍ମାହତ ହୋଇ ପିଙ୍ଗଳ ଉଠିପଡି ସେମାନଙ୍କୁ ଯେମିତି ବାଧା ଦେଇଛି, ସେମାନେ ସେଇଠୁ ପିଙ୍ଗଳକୁ ପିଟିଲେ।

କିନ୍ତୁ ମା ଘର ବାହାରକୁ ଯାଇ ପାଟିକରି ପଡ଼ୋଶୀମାନଙ୍କୁ ଡ଼ାକି ପକାଇଲେ। ସେମାନେ ଦୌଡ଼ି ଆସି ଦୁଇ ଭାଇ କବଳରୁ ପିଙ୍ଗଳକୁ ରକ୍ଷା କଲେ ଓ ସେ ଦୁହିଙ୍କୁ ଗାଳିଗୁଲଜ କରି ଧକ୍କା ଦେଇ ଘରୁ ନିକାଳି ଦେଲେ।

ଗଲାବେଳେ ସେମାନେ ପିଙ୍ଗଳକୁ ନାଲି ଆଖି ଦେଖାଇ କହିଗଲେ, "ତୁ ଭାବୁଛୁ ଆମେ ତୋତେ ଏତେ ସହଜରେ ଛାଡ଼ିଦେବୁଁ ? କଦାପି ନୁହେଁ । ଦେଖିବୁ, ବିଚାରାଳୟରେ କ'ଣ ହେବ ।"

ସତକୁ ସତ ଦୁଇ ଭାଇ ବିଚାରାଳୟର ଆଶ୍ରୟ ନେଲେ । ଯେଉଁ ସମୟର କଥା କୁହାଯାଉଛି, ସେତେବେଳେ ବିଚାରକମାନଙ୍କୁ ଲାଂଚ ଦେଇ ବଶ କରିବା ସହଜ ଥିଲା । ଦୁଇ ଭାଇ ତାହାହିଁ କଲେ । ବିଚାରକ ପିଙ୍ଗଳ ଓ ମା'ଙ୍କୁ ଡାକି ରାୟ ଶୁଣାଇଦେଲେ । ସେ ରାୟ ଅନୁସାରେ ମାଙ୍କ ସମ୍ପତ୍ତି ସଙ୍ଗେ ସଙ୍ଗେ ତିନିଭାଗ କରାହୋଇ ଦୁଇଭାଗ ଦୁଇ ବଡ଼ ପୁଅଙ୍କୁ ଦେଇଦେବା କଥା ।

କିନ୍ତୁ ପିଙ୍ଗଳକୁ ଉଚ୍ଚ ବିଚାରାଳୟର ଆଶ୍ରୟ ନେବା ନିମନ୍ତେ କେହି କେହି ପ୍ରତିବେଶୀ ପରାମର୍ଶ ଦେଲେ । ରାୟ ଭୁଲ୍ ହୋଇଥିବା ବିଷୟରେ ପିଙ୍ଗଳର ମଧ୍ୟ ସାମାନ୍ୟ ସନ୍ଦେହ ନଥିଲା । ତେଣୁ ସେ ଉଚ୍ଚ ବିଚାରାଳୟକୁ ଗଲା ।

ଉଚ୍ଚ ବିଚାରାଳୟରେ ଅନେକ ମକଦ୍ଦମା ପଡ଼ିଥାଏ । ତେଣୁ ସେଠାରୁ ରାୟ ପାଇବାକୁ ପ୍ରାୟ ବର୍ଷେ ଲାଗିଗଲା । ସେ ବର୍ଷକ ଧରି ପିଙ୍ଗଳକୁ ପ୍ରତି ମାସରେ ଦୁଇଥର କରି ସହରକୁ ଯିବାକୁ ପଡୁଥାଏ । ଫଳରେ ସେ ଘର ପାଖରେ ଆରମ୍ଭ କରିଥିବା ଛୋଟିଆ ଦୋକାନଟି ଚାଲି ପାରିଲା ନାହିଁ । ବେପାରୀ-ମାନଙ୍କ ପାଖରୁ ଯେଉଁ ସବୁ ଜିନିଷ ସେ



ଆଣିଥିଲା, ଜମି ବିକ୍ରି କରି ତା'ର ମୂଲ୍ୟ ଦେବାକୁ ପଡ଼ିଲା ।

ଏଣେ ସହରରେ ଯାଇ ଭଡ଼ା ଘରେ ରହିବାକୁ ପଡ଼ୁଥାଏ; ଓକିଲମାନଙ୍କୁ ପଇସା ଦେବାକୁ ପଡ଼ୁଥାଏ । ସେଥିରେ ପ୍ରଚୁର ଖର୍ଚ୍ଚ ହେଉଥାଏ ।

ଶେଷକୁ ରାୟ ବାହାରିଲା । ରାୟ ପିଙ୍ଗଳ ସପକ୍ଷରେ ଗଲା । କିନ୍ତୁ ସେତେବେଳକୁ ତା' ପାଖରେ ସମ୍ପତ୍ତି ବୋଲି କିଛି ନ ଥାଏ ।

ସେ ରାୟ ଯୋଗୁଁ ଦୁଇଭାଇଙ୍କର ବି କିଛି ଲାଭ ହେବା ତ ଦୂରର କଥା, ସେମାନେ ବି ରାସ୍ତାର ଭିଖାରି ବନିଗଲେ ।

ପିଙ୍ଗଳ ଅନ୍ୟତ୍ର ଉଠିଯାଇ ଗୋଟିଏ ଛୋଟିଆ ଘରେ ମା ସହ ରହିଲା । କଠିନ ପରିଶ୍ରମ କରି କୌଣସି ମତେ ଚଳିଯିବ—ତା'ର ଏ ବିଶ୍ୱାସ ଥାଏ ।

ସେତେବେଳକୁ ଗାବଦଣ୍ଡ ଓ ଲକ୍ଷଧର ଭିଖାରି ହୋଇ ବୁଲୁଥାନ୍ତି ।

ପିଙ୍ଗଳ ସବୁଦିନେ ଜାଲଟିଏ ଧରି ନଦୀକୁ ଯାଏ । ମାଛ ଧରିବାରେ ତା'ର ଅଭ୍ୟାସ ନଥିଲେ ବି ସେ ଚେଷ୍ଟା କରୁଥାଏ । ସଞ୍ଜବେଳକୁ କିଛି ନା କିଛି ମାଛ ସେ ଧରି ପାରୁଥାଏ । ତାକୁ ନେଇ ବଜାରରେ ବିକ୍ରି କରେ । ସେ ପଇସାରେ ବାଟରୁ ଆଉ ଗୋଟାଏ ଦୋକାନରୁ ଡାଲି ଚାଉଳ କିଣି ଘରକୁ ଲେଉଟି ଆସେ ।

କ୍ରମେ ମା ଘରେ କିଛି ଡାଲି ଚାଉଳ ସଞ୍ଚି ରଖିବାକୁ ସକ୍ଷମ ହେଲେ ।



ଏଣେ ଦୁଇ ବଡ଼ ଭାଇ ଦୁଇଦିନ ଭୋକ ନ ପାଇ ପ୍ରାୟ ଉପବାସ ରହି ଦିନେ ଉପରଓଳି ଢାଢ ଢାଢ ଆସି ପିଙ୍ଗଳ ଘରେ ପହଞ୍ଚିଲେ । ମା ସେମାନଙ୍କ ଦୁରବସ୍ଥା ଦେଖି ପୂର୍ବ କଥା ଭୁଲିଯାଇ ଘରେ ଯାହାଥିଲା ସେମାନଙ୍କୁ ଖାଇବାକୁ ଦେଲେ ।

ପରଦିନ ବି ପିଙ୍ଗଳ ଘରେ ନ ଥିବାବେଳେ ସେମାନେ ଆସି ଖାଇପିଇ ଗଲେ ।

ଦିନେ ପିଙ୍ଗଳର ଜାଲରେ ଗୋଟାଏ ବି ମାଛ ପଡ଼ିଲା ନାହିଁ । ସେ ହତାଶ ହୋଇ ଘରକୁ ଫେରୁଛି, ଯେଉଁ ଦୋକାନରୁ ସେ ସଉଦା କରେ ସେ ଦୋକାନର ମାଲିକ ତାକୁ ଡାକ ପକାଇଲା ଓ କହିଲା, "କି ହୋ, ଆଜି କ'ଣ ଡାଲି ଚାଉଳ ଲୋଡ଼ା ନାହିଁ ?"

"ଭାଇ, ଆଜି ମାଛ ପଡ଼ିଲେ ନାହିଁ । ପଇସା କାହିଁ ଯେ ସଉଦା କରିବି?" ପିଙ୍ଗଳ ନିଷ୍କପଟରେ କହିଲା ।

"ତମର ସିନା ଆଜି ପଇସା ନାହିଁ, ହେଲେ କାଲିକି ପୁଣି ହାତରେ ପଇସା ହୋଇଯିବ । ତମେ ଯାହା ନେବାର ନେଇଯାଅ । ପଇସା ପରେ ଦେବ ।" ଦୋକାନୀ କହିଲା । ପିଙ୍ଗଳ ଖୁସି ହେଲା ।

ପିଙ୍ଗଳ ସଉଦା ଧରି ଘରେ ସେଦିନ ସହଳ ପହଞ୍ଚି ଦେଖିବା ବେଳକୁ ଦୁଇ ବଡ଼ ଭାଇ ସଦ୍ୟ ଖାଇପିଇ ସାରି ମାଙ୍କ ସହ ଗପସପ ହେଉଛନ୍ତି । ପିଙ୍ଗଳ ସେମାନଙ୍କୁ ଦେଖିବା ମାତ୍ରେ ଆନନ୍ଦରେ ଧାଇଁ ଯାଇ ଆଲିଙ୍ଗନ କଲା ଓ କହିଲା, "ମୋର କେଡ଼େ ଭାଗ୍ୟ,



ଆଜି ତୁମମାନଙ୍କୁ ଦେଖିଲି! ପୂର୍ବ କଥା ଭୁଲିଯାଅ । ଏ ଘରେ ଯାହା ଯେତେବେଳେ ଥିବ, କୌଣସି ସଙ୍କୋଚ ନକରି ଖାଇପିଇ ଯିବ ।"

ବଡ଼ ଭାଇ ପିଙ୍ଗଳକୁ କୁଣ୍ଢାଇ ପକାଇ କହିଲା, "ପିଙ୍ଗଳ! ତୁ ଏଡ଼େ ମହତ୍ ବୋଲି ଜାଣିଥିଲେ କି ଆମେ ଅଦାଲତକୁ ଯାଇ ସର୍ବସ୍ୱ ହରାଇଥାନ୍ତୁ!"

ତିନିଭାଇଙ୍କର ସେ ମିଳନ ଦେଖି ମା ଆନନ୍ଦାଶ୍ରୁ ରୋକିପାରିଲେ ନାହିଁ ।

ପରଦିନ ପିଙ୍ଗଳ ଯଥାରୀତି ଜାଲ୍ ଧରି ବାହାରିଗଲା । କିନ୍ତୁ ସେଦିନ ସେ ନଦୀରୁ ଗୋଟାଏ ମଧ୍ୟ ମାଛ ଧରିପାରିଲା ନାହିଁ । ଅନେକ ସମୟ ଚେଷ୍ଟା କରି ବିଫଳ ହୋଇ ସେ ଅନ୍ୟ କୌଣସି ଜଳଦ୍ୱର ସନ୍ଧାନରେ ବାହାରିଲା ।

କିଛି ଦୂର ଯିବା ପରେ ଗୋଟାଏ ସରୋବର ତା' ଆଖିରେ ପଡ଼ିଲା । ସେ ଅଞ୍ଚଳ ନିର୍ଜନ । ସେ ସେଇଠି ଜାଲ ପକାଇବାକୁ ଉଦ୍ୟତ ହେଉଛି, ଦେଖିଲା ଜଣେ କେହି ଘୋଡ଼ା ଛୁଟାଇ ତା' ଆଡ଼େ ମାଡ଼ି ଆସୁଛି ।

ଅଶ୍ୱାରୋହୀ ପାଖକୁ ଆସି କହିଲା, "ପିଙ୍ଗଳ! ତମେ ମୋର ଗୋଟାଏ ଉପକାର କରିବ?"

"କିଏ ତୁମେ? ମୋ ନାମ ଜାଣିଲ କିପରି?" ପିଙ୍ଗଳ ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

"ମୋ ଗୁରୁଦେବ ତମେ ଜନ୍ମ ହେବା ପୂର୍ବରୁହିଁ ତମ କଥା ମୋତେ କହିଥିଲେ ।



ଆଜି ତମ ସହ ଏ ସରୋବର ପାଖରେ ଦେଖା ହେବ, ଏକଥା ବି ସେ ଜଣାଇଥିଲେ । ଏସବୁ ଚାଳିଶ ବର୍ଷ ତଳର କଥା । ବର୍ତ୍ତମାନ କୁହ, ମୋର ଉପକାର କରିବ?" ଆଗନ୍ତୁକ ପଚାରିଲା ।

"ତମ ନାମ କ'ଣ? କି କାମ କରିବାକୁ କହୁଛ?" ପିଙ୍ଗଳ ପ୍ରଶ୍ନ କଲା ।

"ମୋ ନାମ ମଣ୍ଡନ । ତମକୁ ଯାହା କରିବାକୁ କହୁଛି, ତାହା କଠିନ ନ ହେଲେ ବି ତମକୁ ଆଶ୍ଚର୍ଯ୍ୟଜନକ ମନେ ହେବ । କିନ୍ତୁ ତମର ଚିନ୍ତା କରିବାର କିଛି ନାହିଁ । ଶୁଣ । ମୋ ହାତ ଏ ଦଉଡ଼ିରେ କଷି କରି ବାନ୍ଧି ଦିଅ । ତା'ପରେ ମୋତେ ତୋଳି ନେଇ ସରୋବର ଭିତରେ ପକାଇ ଦେଇ ଅପେକ୍ଷା କର । ଯଦି କିଛି ସମୟ ପରେ ମୋ ମୁଣ୍ଡ ଦେଖାଯିବ, ତେବେ ଜାଲ୍ ପକାଇ ମୋତେ କୂଳକୁ ଟାଣି ଆଣିବ । ଯଦି ମୋ ଗୋଡ ଦୁଇଟି ଦେଖାଯିବ, ତେବେ କିଛି ନକରି ମୋ ଘୋଡ଼ା ଚଢ଼ି ସହରକୁ ଚାଲିଯିବ ଓ ପ୍ରସିଦ୍ଧ ବଣିକ କାଞ୍ଚନ ମିଶ୍ରଙ୍କୁ ଭେଟିବ । ସେ ତମକୁ ସଙ୍ଗେ ସଙ୍ଗେ ଶହେ ସୁନା ମୋହର ଦେଇଦେବେ ।" ମଣ୍ଡନ କହିଲା ।

କାମଟି ଆଶ୍ଚର୍ଯ୍ୟଜନକ ଓ ଅଖାଡୁଆ ମନେ ହେଲେ ବି ପିଙ୍ଗଳ ମଣ୍ଡନର ହାତ ବାନ୍ଧିଲା ଓ ତାକୁ ନେଇ ସରୋବର ଭିତରକୁ ପକାଇ ଦେଲା । କିଛି ସମୟ ପରେ ଲୋକଟିର ଗୋଡ ଦୁଇଟି ଉପରକୁ ଦେଖାଗଲା । ସେ ପୂର୍ବ ନିର୍ଦେଶ ମୁତାବକ ଘୋଡ଼ା ଚଢ଼ି ସହରରେ ଯାଇ ପହଞ୍ଚିଲା । ପ୍ରସିଦ୍ଧ ବଣିକ କାଞ୍ଚନ ମିଶ୍ରର ଘର ପାଇବାକୁ କଷ୍ଟ ହେଲା ନାହିଁ । ଘୋଡ଼ା ସହ ତାକୁ ଦେଖିବା ମାତ୍ରେ କାଞ୍ଚନ ମିଶ୍ର ସବୁ ବୁଝିଗଲା ଓ ତାକୁ ଶହେ ସୁନା ମୋହର ଦେଇ କହିଲା, "ପୁଅ, ଯାହା ହେଲା, ସେକଥା କାହାକୁ କହିବୁ ନାହିଁ । ତୋର ମଙ୍ଗଳ ଦୃଷ୍ଟିରୁ କହୁଛି ।"

(କ୍ରମଶଃ)






# ମନୋନୟନ

ନିଶା ଗରଜୁଥାଏ । ଝୁହାଲୁ ଝୁହା ବର୍ଷା ହେଉଥାଏ । ଶ୍ୱାନଶ୍ୱାପଦଙ୍କ ରଡ଼ ସାଙ୍ଗକୁ ଶୁଭୁଥାଏ ପ୍ରବଳ ଘଡ଼ଘଡ଼ି । ସେସବୁ ଭିତରେ ପୁଣି ଥରେ ଥରେ ଶୁଣାଯାଉଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ବିଜୁଳି ଆଲୁଅରେ ଦିଶିଯାଉଥାଏ ସେମାନଙ୍କ ଭୟାବହ ମୂର୍ତ୍ତିମାନ ।

କିନ୍ତୁ ତିଳେ ବି ଦ୍ୱିଧାବୋଧ ନକରି ରାଜା ବିକ୍ରମାର୍କ ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ଆରୋହଣ କଲେ ଓ ଶବଟିକୁ ଓତାରି ଆଣିଲେ ।

ତେବେ ସେ ଯେତେବେଳେ ତାକୁ କାନ୍ଧରେ ପକାଇ ଶୁନ୍‌ଶାନ୍‌ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କଲେ, ଶବସ୍ଥିତ ବେତାଳ ତାଙ୍କୁ କହିଲା, "ରାଜା! ତମେ ଯାହା ଦ୍ୱାରା ଅନୁପ୍ରାଣିତ ହୋଇ କୌଣସି ଦୁଃସାହସିକ

ବେତାଳ କଥା



କାମ ହାତକୁ ନେଇଛ, ତା' ବିଚାର ବୁଦ୍ଧି ସ୍ୱାଭାବିକ ବୋଲି ଜାଣିଛ ତ? ଅନେକ ସମୟରେ ଦେଖାଯାଏ ସମାଜରେ ବୁଦ୍ଧିମାନ ହିସାବରେ ଜଣାଶୁଣା ଲୋକେ ଭୁଲ ସିଦ୍ଧାନ୍ତ କରି ବସନ୍ତି। ଦୃଷ୍ଟାନ୍ତ ରୂପେ ତୁମକୁ କାହାଣୀଟିଏ କହୁଛି; ଶୁଣ। ଶୁଣିଲେ ଶ୍ରମଭାର ଲାଘବ ମନେ ହେବ।"

ବେତାଳ ଗପିଲା: ଅନନ୍ତ ଦାସ ତାଙ୍କ ଅଞ୍ଚଳରେ ଜଣେ ଜଣାଶୁଣା ଲୋକ ଥିଲେ। ତାଙ୍କ ବିଚାର ବିବେକ ଉପରେ ଲୋକଙ୍କର ବହୁତ ଆସ୍ଥା ଥିଲା। ତେଣୁ ସେମାନଙ୍କର ଭିନ୍ନ ଭିନ୍ନ ସମସ୍ୟା ଉପରେ ଲୋକେ ତାଙ୍କ ପରାମର୍ଶ ନେଉଥିଲେ।

ଅନନ୍ତ ଦାସଙ୍କର ପ୍ରଚୁର ସମ୍ପତ୍ତି ଥିଲା। କିନ୍ତୁ ସନ୍ତାନ ବୋଇଲେ ଗୋଟିଏ ବୋଲି ଝିଅ। ଯିଏ ଜାମାତା ହେବ, ସିଏ ତାଙ୍କ ଘର ସମ୍ପତ୍ତିର ଉତ୍ତରାଧିକାରୀ ହେବା କଥା। ଝିଅଟିର ନାମ ଚମ୍ପା। ସେ ଯେମିତି ସୁକୁମାର ସ୍ୱଭାବର ଝିଅ, ସେମିତି କଳା ପ୍ରିୟ। ସେ ଚମତ୍କାର ଭାବରେ ଗୀତ ବୋଲି ପାରୁଥିଲା।

ଅନନ୍ତ ଦାସ ଯେତେବେଳେ ସହରରେ ରହି ପାଠ ପଢୁଥିଲେ, ସେତେବେଳେ ତାଙ୍କ ସହପାଠୀମାନଙ୍କ ଭିତରେ ଚାରିଜଣଙ୍କ ସହ ତାଙ୍କର ବିଶେଷ ବନ୍ଧୁତା ଥିଲା। ସେ ଚାରିଜଣଙ୍କର ଚାରିପୁଅ ଥିଲେ ବୋଲି ସେ ଜାଣିଥିଲେ। ସେମାନଙ୍କ ଭିତରୁ କାହାକୁ ହେଲେ ଜାମାତା କରିବାର ସମ୍ଭାବନା ଅଛି କି ନାହିଁ ଦେଖିବା ନିମନ୍ତେ ସେ ବାହାରିଲେ।

ଅଜ୍ଞାତ ଭଦ୍ରବ୍ୟକ୍ତିଙ୍କ ଘରେ ଝିଅ ଦେବା ଅପେକ୍ଷା ପୁରୁଣା ବନ୍ଧୁ ଘରେ ଝିଅ ଦେବା ଭଲ ହେବ ବୋଲି ତାଙ୍କର ଧାରଣା ହୋଇଥିଲା। ଅବଶ୍ୟ ଚାରିବନ୍ଧୁଙ୍କ ସହ ଅନେକ ବର୍ଷ ହେବ ଦେଖାସାକ୍ଷାତ ହୋଇ ନଥିଲା। ଖାଲି ମଧ୍ୟେ ମଧ୍ୟେ ଖବର ଦିଆନିଆ ହେଉଥାଏ। ବନ୍ଧୁମାନଙ୍କୁ ଭେଟିବା ସକାଶେ ଏହା ଏକ ସୁଯୋଗ ବୋଲି ଅନନ୍ତ ବହୁତ ଆନନ୍ଦ ଅନୁଭବ କରୁଥାନ୍ତି।

ପ୍ରାୟ କୋଡ଼ିଏ କ୍ରୋଶ ଦୂରରେ ରହୁଥିଲେ ବନ୍ଧୁ ସୁଦାମ ରାୟ। ବିରାଟ କୋଠାଘର।

ରାୟ ଅନନ୍ତଙ୍କୁ ଦେଖି ବହୁତ ଖୁସି ହେଲେ । ଅନନ୍ତ ସୁଦାମଙ୍କୁ ଦେଖି ଯେତିକି ଆନନ୍ଦିତ ହେଲେ, ବନ୍ଧୁ-ପୁତ୍ର ବିନାୟକଙ୍କୁ ଦେଖି ତାହାଠୁଁ ବେଶି ଖୁସି ହେଲେ । ବିନାୟକ ଯେପରି ବୁଦ୍ଧିମାନ ସେହିପରି ସତ୍‌ସ୍ୱଭାବର ଯୁବକ ।

ଦୁଇ ବନ୍ଧୁ ଗପସପ ହେଲା ବେଳେ ସୁଦାମ ଜାଣିଲେ ଯେ ଅନନ୍ତଙ୍କ ଏକମାତ୍ର ସନ୍ତାନର ନାମ ଚମ୍ପା । ସେ ସଙ୍ଗେ ସଙ୍ଗେ ଉତ୍ସାହରେ କହିଲେ, "ବୁଝିଲ ଅନନ୍ତ, ଆମର ଘୋଡ଼ାଶାଳରେ ସବୁଠାରୁ ଭଲ ଘୋଡ଼ାର ନାମ ଚମ୍ପା । ଚାଲ, ତମକୁ ଆମ ଘୋଡ଼ାଶାଳ ଦେଖାଇ ଆଣେ ।"

ସୁଦାମ ରାୟ ଅନନ୍ତଙ୍କୁ ନେଇଯାଇ ଘୋଡ଼ାଶାଳ ଦେଖାଇଲେ । ଅନନ୍ତଙ୍କ ଆଖି ଖୋସି ହୋଇଗଲା । ପ୍ରାୟ ଷୋହଳ ଦଶକ ଘୋଡ଼ା । ସେଇଥିରୁ ବୁଝିହେଲା, ସୁଦାମ ରାୟ ବହୁତ ବଡ଼ଲୋକ ।

ପରଦିନ ରାୟଙ୍କଠାରୁ ବିଦାୟ ନେଇ ଅନନ୍ତ ଗଲେ ସେଠୁ ପାଞ୍ଚ ଛଅକୋଶ ଦୂରବର୍ତ୍ତୀ ତାଙ୍କର ଦ୍ୱିତୀୟ ବନ୍ଧୁ ଟିଙ୍କୁ ଗୈଧୁରୀଙ୍କ ଘରକୁ । ଟିଙ୍କୁ ଗୈଧୁରୀ ବି ବନ୍ଧୁଙ୍କୁ ଦେଖି ବଡ଼ ପ୍ରୀତ ହେଲେ । ଗୈଧୁରୀଙ୍କ ପୁଅ ସୁବ୍ରତ ବି ବଡ଼ ଭଲ ସ୍ୱଭାବର ଯୁବକ ବୋଲି ସୁଦାମ ବୁଝି ପାରିଲେ । କଥା ପ୍ରସଙ୍ଗରେ ଅନନ୍ତ କହିଲେ, ସୁଦାମର କି ଆଭିଜାତ୍ୟ! ଷୋହଳ ସଶକ ବଢ଼ିଆ ଘୋଡ଼ା ରଖିଛି !"

ଟିଙ୍କୁ ଗୈଧୁରୀ ଗମ୍ଭୀର ଦେଖାଗଲେ । ଅନନ୍ତ ଯେତେବେଳେ ପୁଣି ସୁଦାମ ରାୟଙ୍କ





କଥା କହିଲେ, ଗ୍ରୈଧୁସି ସମ୍ଭାଳି ନପାରି ଉତ୍ତର ଦେଲେ, "ଅନନ୍ତ, ଷୋହଳ ଘୋଡ଼ା ଦେଖାଇ ଲାଭଟା କ'ଣ କହିଲ? ମୋର ଯେତେ ଅଛି, ସେଥିରେ ଷୋହଳ ହାତୀ ପୋଷି ପାରିବି। କିନ୍ତୁ କ'ଣ ହେବ?"

"ତୁମର ଅବସ୍ଥା ବି ତେବେ ସୁଦାମ ଭଳି ଖୁବ୍ ଭଲ। ଆନନ୍ଦର କଥା।" ଅନନ୍ତ କହିଲେ।

"ତୁମେ ଏ ବିଷୟରେ କାହାକୁ କିଛି କହିବ ନାହିଁ। ହଁ, ମୋର ଅର୍ଥର ଅଭାବ ନାହିଁ। ପ୍ରଚୁର ଅର୍ଥ ଅଛି। ତେବେ ମୁଁ ବାହାଦୁରି ଦେଖାଇ ଖର୍ଚ୍ଚ କରିବାକୁ ଚାହେଁ ନାହିଁ। ସୁଦାମ ଗପ୍ପ କିନ୍ତୁ ବାହାଦୁରି ଦେଖାଇବାକୁ ଭଲ ପାଏ।" ଟିକ୍କୁ ଗ୍ରୈଧୁସି କହିଲେ।

କିଛି ସମୟ ପରେ ଅନନ୍ତ ନିଜ ଝିଅର ଗୁଣ କଥା କହିଲେ। ଗ୍ରୈଧୁସି ଶୁଣିଲେ, କିନ୍ତୁ ବିଶେଷ କିଛି ଆଗ୍ରହ ଦେଖାଇଲେ ନାହିଁ। ଟିକିଏ ପରେ ସେ ବୁଝିଲେ ଯେ ଅନନ୍ତଙ୍କର ଆଉ ସନ୍ତାନ ନାହିଁ। ସେ କହିଲେ, "ଅନନ୍ତ! ତମର ସମ୍ପତ୍ତିବାଡ଼ିର ଭବିଷ୍ୟତ କ'ଣ?"

"ଭବିଷ୍ୟତ ଜ୍ୱାଇଁ ହାତରେ!" ଅନନ୍ତ କହିଲେ।

"ହୁଁ। ମୋ ପୁଅକୁ ଝିଅ ଦେଉନ?"

"ପ୍ରସ୍ତାବ ମନ୍ଦ ନୁହେଁ। ଭାବି ଦେଖିବି।" କହିଲେ ଅନନ୍ତ।

ପରଦିନ ସେ ବିଦାୟ ନେଇ ତୃତୀୟ ବନ୍ଧୁ ସୁନୀଲ ବିଶ୍ୱାସରାୟଙ୍କ ଘରେ ପହଞ୍ଚିଲେ। ସୁନୀଲଙ୍କ ପୁଅ ରବୀନ୍ଦ୍ର ସହ ପରିଚିତ ହୋଇ ସେ ଆନନ୍ଦିତ ହେଲେ। କିନ୍ତୁ ସେ ଦେଖିଲେ ରବୀନ୍ଦ୍ର କିଛି କାମଦାମ କରୁନାହିଁ। ସେ ବୁଝିଲେ, ସହରରେ ସେ ବଡ଼ ଚାକିରିଟିଏ ପାଇଥିଲା। କିନ୍ତୁ ବାପା ଦେହ ଅସୁସ୍ଥ ବୋଲି ସେ ଚାକିରି ଛାଡ଼ିଦେଇ ଘରେ ରହିଛି। ଘର ତାଙ୍କର ସ୍ୱଚ୍ଛଳ, କିନ୍ତୁ ସେମାନେ ଧନୀ ନୁହନ୍ତି।

ରାତି ଅଧରେ ଅନନ୍ତ ଥରେ ବାହାରକୁ ବାହାରି ଆସି ଦେଖିଲେ ରବୀନ୍ଦ୍ର ଠିଆ ହୋଇଛି।



"ବାପା, ଶୋଇବାକୁ ଯାଇନ କାହିଁକି?" ଅନନ୍ତ ପଚାରିଲେ ।

"ହଁ। ମନ୍ଦିର ପ୍ରାଙ୍ଗଣରେ ଜଣେ ବିଶିଷ୍ଟ ସଙ୍ଗୀତଜ୍ଞ ଆଜି ଗୀତ ବୋଲୁଛନ୍ତି । ଏଠି ଠିଆ ହୋଇ ସେଇଆ ଶୁଣୁଛୁ ।" ରବୀନ୍ଦ୍ର କହିଲା ।

"ତମେ ସେଠିକି ଗଲନାହିଁ?"

"ବାପା ଅସୁସ୍ଥ ତ! କେତେବେଳେ ହଠାତ୍ ଦରକାର ହେବ ବୋଲି ମୁଁ ରାତିରେ କୁଆଡ଼େ ଯାଏଁ ନାହିଁ ।" ରବୀନ୍ଦ୍ର କହିଲା।

ପରଦିନ ଅନନ୍ତ ଯାଇ ଚତୁର୍ଥ ବନ୍ଧୁ ବିଜୟ ସେନାପତିଙ୍କ ଘରେ ଅତିଥି ହେଲେ । ବିଜୟ ବହୁତ ଖୁସି ହେଲେ । ତାଙ୍କ ପୁଅ ସୁକାନ୍ତ ସଙ୍ଗୀତଜ୍ଞ । ସଙ୍ଗୀତ ଅଭ୍ୟାସ କଲାବେଳେ ସେ ଦିନ ରାତି, ଖିଆପିଆ ସବୁ ଭୁଲି ଯାଏ । ଅନନ୍ତ ବିଜୟକୁ ଦେଖି ଓ ତା' ଗୀତ ଶୁଣି ଆନନ୍ଦିତ ହେଲେ ଓ ନିଜ ଝିଅ ଚମ୍ପା ମଧ୍ୟ ସଙ୍ଗୀତଜ୍ଞ ବୋଲି କହିଲେ ।

"ତେବେ ସୁକାନ୍ତ ସହ ଚମ୍ପାର ବିବାହ ହେଲେ ଭଲ ହୁଅନ୍ତା ।" ବିଜୟ ସେନାପତି କହିଲେ ।

"ପ୍ରସ୍ତାବ ମନ୍ଦ ନୁହେଁ । ଦେଖିବା ।" କହି ଅନନ୍ତ ଦାସ ଘରକୁ ଚାଲି ଆସିଲେ ।

ସ୍ତ୍ରୀଙ୍କ ସହ ପରାମର୍ଶ କରି ପୁରୋହିତଙ୍କ ଜରିଆରେ ଅନନ୍ତ ସୁନୀଲ ବିଶ୍ୱାସରାୟଙ୍କ ପୁଅ ରବୀନ୍ଦ୍ର ସହ ଝିଅର ବିବାହ ସକାଶେ ପ୍ରସ୍ତାବ ପଠାଇଲେ । ଯଥା ସମୟରେ ବିବାହ ସମ୍ପନ୍ନ ହେଲା ।

ବେତାଳ ଟିକଏ ଚୁପ୍ ରହି ତା'ପରେ ମୁକାବିଲା କଲାଭଳି ଢଙ୍ଗରେ ପ୍ରଶ୍ନ କଲା, "ରାଜା! ଅନନ୍ତ ଦାସେ ବୋକା ନୁହନ୍ତି? ବିତ୍ତଶାଳୀ ସୁଦାମରାୟ ବା ଟିଙ୍କୁ ଚୌଧୁରୀଙ୍କ ଘରେ ଝିଅ ନ ଦେଇ, ଅଥବା ଝିଅ ଭଳି ସଙ୍ଗୀତରେ ଆଗ୍ରହୀ ସୁକାନ୍ତ ସେନାପତିକୁ ଝିଅ ନଦେଇ ରବୀନ୍ଦ୍ର ସହ ବିଭା ଦେବାରେ କେଉଁ ଯୁକ୍ତି ଥାଇପାରେ? ଜାଣିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ସାମର୍ଥ୍ୟ ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ଥରେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ, "ଅନନ୍ତ ଦାସେ ନିଜ ସିଦ୍ଧାନ୍ତ ଦ୍ୱାରା ସଦ୍‌ବୁଦ୍ଧିର ପରିଚୟ ଦେଇଛନ୍ତି । ସୁଦାମ ରାୟ ଚମ୍ପା ପ୍ରତି ଆଗ୍ରହ ନ ଦେଖାଇ ନିଜ ଘୋଡ଼ା ବିଷୟରେ ସଚେତନ ହୋଇ ଉଠିଲେ । ଝିଙ୍କୁ ଚୌଧୁରୀ କୃପଣ ଓ ଈର୍ଷ୍ୟାଳୁ । ସେ ଚମ୍ପାର ଗୁଣ କଥା ଶୁଣି ତାକୁ ବୋହୂ କରିନେବା କଥା ଉଠାଇଲେ ନାହିଁ । କିନ୍ତୁ ଯେତେବେଳେ ବୁଝିଲେ ଯେ ଅନନ୍ତଙ୍କର ସବୁ ସମ୍ପତ୍ତି ତାଙ୍କ ଜୁଆଇଁ ପାଇବ, ସେତେବେଳେ ସେ ହଠାତ୍ ତାଙ୍କ ପୁଅ ସହ ଚମ୍ପାର ବିବାହ ପ୍ରସ୍ତାବ ପକାଇଲେ । ଉଭୟଙ୍କ ପୁଅ ଅବଶ୍ୟ ଭଲ । କିନ୍ତୁ ସେମାନେ ନିଜ ନିଜ ପିତାଙ୍କ ବିରାଟ ସମ୍ପତ୍ତି ଛାଡ଼ି ଅନନ୍ତ ଦାସଙ୍କ ଉତ୍ତରାଧି-କାରୀ ହେବାକୁ ଆସନ୍ତେ ନାହିଁ । ସୁକାନ୍ତ ସେନାପତି ଓ ଚମ୍ପା ଉଭୟେ ସଙ୍ଗୀତ ଚର୍ଚ୍ଚା କରୁଥିବାରୁ ସେମାନଙ୍କ ବିବାହ ଭଲ ହୁଅନ୍ତା—ଯଦି ଦୁହେଁ ଦୁହିଙ୍କୁ ପ୍ରଥମେ ପସନ୍ଦ କରିଥାନ୍ତେ । କିନ୍ତୁ ତାହା ନ ହୋଇଥିବା ସ୍ଥଳେ ସୁକାନ୍ତର ଯିଏ ସ୍ତ୍ରୀ ହେବ, ଆତ୍ମଭୁଲ ସୁକାନ୍ତର ଦେଖାଶୁଣା କରିବା ହେବ ତା'ର କାମ । ବୋହୂ ନିଜେ ସଙ୍ଗୀତରେ ମଜ୍ଜି ରହିଲେ ସମସ୍ୟା ଉପୁଜି ପାରେ ।

"ରବୀନ୍ଦ୍ର, ନିଜେ ଗୀତ ବୋଲେ ନାହିଁ, କିନ୍ତୁ ଗୀତ ଭଲପାଏ ବୋଲି ଅନନ୍ତ ପ୍ରମାଣ ପାଇଲେ । ପୁଣି ସେ ଅତ୍ୟନ୍ତ କର୍ତ୍ତବ୍ୟନିଷ୍ଠ ; ଏକଥା ବାପା ପ୍ରତି ତା'ର ବ୍ୟବହାରରୁ ବୁଝି ହେଉଥିଲା । ସେମାନଙ୍କର ସମ୍ପତ୍ତିବାଡ଼ି ବି ବେଶି ନଥିଲା । ଫଳରେ ସେ ଅନନ୍ତ ଦାସଙ୍କର ଉତ୍ତରାଧିକାରୀ ହେବା ଭଲ ହେବ ।"

ରାଜାଙ୍କ ମୌନ ଭଙ୍ଗ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସି ଯାଇ ପୁନର୍ବାର ବୃକ୍ଷ ଡାଳରେ ଝୁଲି ପଡ଼ିଲା ।

(କଳ୍ପିତ)






# ଶାସନର ରୂପ

ଅନେକଦିନ ତଳର କଥା । ସୀତାପୁର ରାଜ୍ୟର ସବୁ ସୌଦାଗରଙ୍କ ଭିତରେ ଦେବଗୁପ୍ତ ସବୁଠାରୁ ବିଖ୍ୟାତ ଓ ଧନୀ ଥିଲେ । ରାଜ୍ୟର ରାଜା ବିଜୟଶୀଳ ଓ ସେ ବାଲ୍ୟକାଳରେ ଗୁରୁକୁଳରେ ଏକାଠି ରହି ବିଦ୍ୟାଭ୍ୟାସ କରିଥିଲେ । ରାଜା ହେବା ପରେ ବି ବିଜୟଶୀଳ ଦେବଗୁପ୍ତଙ୍କୁ ବହୁତ ଶ୍ରଦ୍ଧା କରୁଥିଲେ ।

ଦେବଗୁପ୍ତ ମଧ୍ୟେ ମଧ୍ୟେ ବୋଇତ ନେଇ ବିଦେଶକୁ ବେପାର ବାଣିଜ୍ୟ କରିବା ନିମନ୍ତେ ଯାଉଥିଲେ । ଥରେ ସେ ସେଥିପାଇଁ ପ୍ରସ୍ତୁତ ହୋଇ ତାଙ୍କ ବନ୍ଧୁ ରାଜା ବିଜୟଶୀଳଙ୍କ ନିକଟରୁ ବିଦାୟ ନେବାପାଇଁ ଗଲେ । ରାଜା କହିଲେ, "ଦେବ, ଆମେ ଆସି ବୁଢ଼ା ହେଲୁଣି । ଏଥର ମୁଁ ରାଜକାର୍ଯ୍ୟରୁ ଓ ତମେ ବ୍ୟବସାୟରୁ ଅବସର ନେବା ଉଚିତ । ତମ ପୁଅ ହାତରେ ସବୁ ଛାଡ଼ି ଦେଉନା କାହିଁକି?"

"ମହାରାଜ, ମୁଁ ସେଇଆ କରୁଛି । ଏଥର ପୁଅକୁ ସଙ୍ଗରେ ନେଇ ଯାଉଛି । ବିଦେଶରେ ଥିବା ମୋର ବ୍ୟବସାୟୀ ବନ୍ଧୁବର୍ଗଙ୍କ ସହ ପରିଚୟ କରିଦେବି । ସଙ୍ଗେ ସଙ୍ଗେ ବାଣିଜ୍ୟର କେତେକ କୌଶଳବି ଶିଖାଇ ଦେବି । ଏହାହିଁ ମୋର ଶେଷ ଜଳଯାତ୍ରା ।" ଦେବଗୁପ୍ତ କହିଲେ ।

ଏହା ପରେ ଦେବଗୁପ୍ତ ବୋଇତ ନେଇ ବାହାରିଗଲେ । ତାଙ୍କର ବାଣିଜ୍ୟ ବେଶ୍ ଭଲରେ ହେଲା । ପୁଅ ବହୁତ କଥା ଶିଖିଲା । କିନ୍ତୁ ସେ ବହୁଦିନ ଯାଏ ବିଦେଶରେ ରହିଗଲେ । ଦେଶରେ ଖବର ପାଉ ନଥିଲେ ।

ଅବଶେଷରେ ସୀତାପୁର ପ୍ରତ୍ୟାବର୍ତ୍ତନ କରି ସେ ପ୍ରଥମେ ଯେଉଁ ସମ୍ବାଦ ପାଇଲେ, ତାହା

ତାଙ୍କୁ ମର୍ମାହତ କଲା । ରାଜା ବିଜୟଶୀଳ ପରଲୋକ ଗମନ କରିଥିଲେ । ତାଙ୍କ ପୁଅ ଜୟକେଶରୀ ରାଜା ହୋଇଥିଲେ ।

ନୂତନ ଶାସନରେ ରାଜ୍ୟର ଅବସ୍ଥା ଅନେକ ବଦଳି ଯାଇଥିଲେ । ସେ ପରିବର୍ତ୍ତନ ଦେଖି ଦେବଗୁପ୍ତ ବ୍ୟଥିତ ହେଲେ । ତେବେ ତାହାକୁ କିଛି ନକହି ତରୁଣ ରାଜାଙ୍କ ସହ ଦେଖା କରିବାକୁ ଗଲେ ।

ପିତୃବନ୍ଧୁ ଆସିଥିବାରୁ ରାଜା ଜୟକେଶରୀ ବହୁତ ଖୁସି ହେଲେ ଓ ତାଙ୍କୁ ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କଲେ । ତା'ପରେ ପଚାରିଲେ, "ମୋ ଶାସନ କିପରି ଚାଲିଛି ଭାବୁଛନ୍ତି ?"

ଦେବଗୁପ୍ତ କିଛି କହିଲେ ନାହିଁ । ତରୁଣ ରାଜା ପ୍ରଶ୍ନଟି ଦ୍ୱିତୀୟଥର ପାଇଁ ପଚାରିଲେ ।

ଦେବଗୁପ୍ତ ଗମ୍ଭୀର ହୋଇ କହିଲେ, "ଚାଲିଛି ବୋଲି ଚାଲିଛି ? ପ୍ରବଳ ଗତିରେ ଚାଲିଛି । ବେପାରୀମାନେ ଆପଣଙ୍କ ବାପାଙ୍କ ରାଜୁତିରେ ବର୍ଷକୁ ଯେତିକି ଲାଭ କରୁଥିଲେ ଏବେ ମାସକରେ ସେତିକି କରୁଛନ୍ତି । ପୂର୍ବେ ସିପାହୀମାନଙ୍କୁ ଦେଖିଲେ କେବଳ ଚୋର ଖଣ୍ଟ ଡରୁଥିଲେ, ଏବେ ସାଧୁ ସନ୍ଥ ବି ଡରୁଛନ୍ତି । ଆଗେ ଖାଲି ରାଜାଙ୍କୁ ଭେଟି ଦେବା ବିଧିଥିଲା—ତାହାବି କୌଣସି ଉପଲକ୍ଷ୍ୟରେ । ଏବେ ନଅରର ଦ୍ୱାରପାଳଙ୍କୁ ବି ଭେଟି ଦେବାକୁ ପଡୁଛି । ଅର୍ଥାତ୍ ସେ ବି ରାଜାଙ୍କ ଗୌରବର ଭାଗିଦାର ହୋଇ ପାରିଲଣି ।"

ତରୁଣ ରାଜା ମୁଣ୍ଡ ତଳକୁ କରି ବସି ରହିଲେ । ଦେବଗୁପ୍ତ ବିଦାୟ ନେଇ ଚାଲିଗଲେ । କିନ୍ତୁ ଦେବଗୁପ୍ତଙ୍କ ଉତ୍ତରର ମର୍ମ ସେ ବୁଝିଲେ । ସେହି ମୁହୂର୍ତ୍ତରୁ ସେ ଦୁର୍ନୀତିପରାୟଣ ବ୍ୟବସାୟୀ ଓ ରାଜକର୍ମଚାରୀମାନଙ୍କ ବିରୁଦ୍ଧରେ ଅଭିଯାନ ଆରମ୍ଭ କଲେ ।

ଦେବଗୁପ୍ତ ନିଜ କର୍ତ୍ତବ୍ୟ କରିପାରିଥିବାରୁ ବହୁତ ଖୁସି ହେଲେ ।





# ସାଫଲ୍ୟ-ରହସ୍ୟ

ପୂର୍ବକାଳରେ କୋଶଳ ଦେଶରେ ସମରଗୁପ୍ତ ନାମକ ଜଣେ ମଲ୍ଲଯୋଦ୍ଧା ଥିଲେ । ସେ ବାଳକ ଅବସ୍ଥାରୁ ଅଜିତ ଗୁପ୍ତ ନାମକ ବିଖ୍ୟାତ ମଲ୍ଲବିଦ୍ୟାବିଶାରଦଙ୍କ ଶିଷ୍ୟ ହୋଇ ମଲ୍ଲଯୁଦ୍ଧ, ମୁଷ୍ଟିଯୁଦ୍ଧ ଇତ୍ୟାଦି ଶିଖିଥିଲେ । ବିଦ୍ୟାଶିକ୍ଷା ପ୍ରତି ତାଙ୍କର ଏପରି ନିଷ୍ଠା ଥିଲା ଯେ ଗୁରୁ ତାଙ୍କଠାରୁ କୌଣସି କଳା କୌଶଳ ଗୋପନ ରଖିଲେ ନାହିଁ । ମନଧ୍ୟାନ ଦେଇ ସବୁ ଶିଖାଇଲେ ।

ସମରଗୁପ୍ତଙ୍କ ଖ୍ୟାତି ଶୁଣି ପ୍ରତିଷ୍ଠିତ ମଲ୍ଲ-ଯୋଦ୍ଧାମାନେ ତାଙ୍କ ସହ ନିଜ ନିଜ ବଳ ପରୀକ୍ଷା କଲେ । କେହି ତାଙ୍କୁ ଝିପି ପାରିଲେ ନାହିଁ । ସମରଗୁପ୍ତ ଯାହାକୁ ହରାଇ ଦେଉଥାନ୍ତି, ତାଠାରୁ ବି କିଛି ନା କିଛି କୌଶଳ ଶିଖି ନେଉଥାନ୍ତି ।

ଖାଲି କୋଶଳ ଦେଶ ନୁହେଁ, ଆଖପାଖର ସବୁ ରାଜ୍ୟରେ ବି ସମରଗୁପ୍ତଙ୍କ ସହ ଲଢ଼ିଲା ଭଳି ମଲ୍ଲଯୋଦ୍ଧା ଆଉ କେହି ନଥିଲେ । ଥରେ ଥରେ ସମରଗୁପ୍ତ ନିଜେ ଆଶ୍ଚର୍ଯ୍ୟ ହେଉଥିଲେ । କାରଣ ବଳରେ ଯେ ସମସ୍ତେ ତାଙ୍କଠାରୁ ଊଣା ଥିଲେ, ତାହା ନୁହେଁ । ପୁଣି କୌଶଳରେ ମଧ୍ୟ ତାଙ୍କଠାରୁ ବିଚକ୍ଷଣ ମଲ୍ଲଯୋଦ୍ଧା ବି ରହିଥିଲେ । ତଥାପି ସେ କିପରି ସମସ୍ତଙ୍କୁ ପରାସ୍ତ କରିଦେଉଥିଲେ, ତାହାହିଁ ହେଲା ତାଙ୍କ ବିସ୍ମୟର କାରଣ ।

ଥରେ ସେ ଗୁରୁଙ୍କ ଆଗରେ ବସିଥିବା ବେଳେ ଅନ୍ୟ କେହି କେହି ତାଙ୍କର ପ୍ରଶଂସା କରିବାରୁ ସେ ଗୁରୁଙ୍କୁ ଅନାଇ କହିଲେ, "ଗୁରୁଜୀ! ଆପଣଙ୍କ ଆଶୀର୍ବାଦରୁ ମୁଁ ସବୁ ମଲ୍ଲଯୋଦ୍ଧାଙ୍କୁ ହରାଇଦେଇ ପାରୁଛି । ସେପାଇଁ ମୋ ମନରେ ଗର୍ବ ନାହିଁ ସତ, କିନ୍ତୁ ପ୍ରଶ୍ନ ଅଛି । ସମସ୍ତେ କ'ଣ ବଳ କୌଶଳରେ ମୋଠାରୁ ଗୌଣ ?"



"ନା ବତ୍ସ, ସମସ୍ତେ ଶୌଣ କାହିଁକି ହେବେ? ତେବେ ଖାଲି ବଳ କୌଶଳ ଯୋଗେ ଜଣେ ଜୟଲାଭ କରିପାରେ ନାହିଁ । ସେପାଇଁ ଅନ୍ୟ ଏକ ଗୁଣ ପ୍ରୟୋଜନ ।" ଗୁରୁ କହିଲେ ।

"ସେ ଗୁଣ କ'ଣ?" ସମରଗୁପ୍ତ ପଚାରିଲେ ।

"ବତ୍ସ! ମୁଁ କହିବା ଦରକାର ନାହିଁ । ବେଳେ ବୁଝି ପାରିବୁ ।" ଗୁରୁ ଉତ୍ତର ଦେଲେ ।

ଏହାର କିଛିଦିନ ପରେ ସମରଗୁପ୍ତ ବିଦେଶ ଭ୍ରମଣରେ ବାହାରିଲେ । ତାଙ୍କଠାରୁ ବଡ଼ କୌଣସି ମଲ୍ଲଯୋଦ୍ଧାଙ୍କୁ ଭେଟିବା ତାଙ୍କର ଉଦ୍ଦେଶ୍ୟ ଥିଲା ।

ସେ କାମରୂପ ରାଜ୍ୟ ସୀମାନ୍ତ ଦେଇ ଯିବାବେଳେ ହଠାତ୍ ଗୋଟାଏ ରାକ୍ଷସ ତାଙ୍କୁ ଦେଖି ପକାଇଲା । ନିକୁମ୍ଭ ନାମରେ କୁଖ୍ୟାତ ସେ ରାକ୍ଷସ ଗୋଟାଏ ଗୁମ୍ଫା ଭିତରେ ରହିଥାଏ । କ୍ଷୁଧା ଲାଗିଲେ ବାହାରି ଆସି ମଣିଷ ବା ପାଳିତ ପଶୁଙ୍କୁ ଧରିନେଇ ଖାଉଥାଏ ।

ରାଜା ସେ ରାକ୍ଷସକୁ ଦମନ କରିବା ନିମନ୍ତେ ବହୁତ ଚେଷ୍ଟା କରିଥିଲେ । କିନ୍ତୁ ସଫଳ ହୋଇ ନଥିଲେ । ତାଙ୍କ ସୈନ୍ୟମାନଙ୍କ ଆଡ଼କୁ ଯେପରି ପ୍ରବଳ ହୁଙ୍କାର ଛାଡ଼ି ରାକ୍ଷସ ମାଡ଼ି ଆସୁଥିଲା, ସେଥିରେ ତ୍ରସ୍ତ ହୋଇ ସୈନ୍ୟମାନେ ଛତ୍ରଭଙ୍ଗ ଦେଉଥିଲେ । ଫଳରେ ନିକୁମ୍ଭର ଦମ୍ଭ ବଢ଼ି ଯାଇଥାଏ ।

ରାକ୍ଷସକୁ ଦେଖିବା ମାତ୍ରେ ତା' ସହ ଦ୍ୱନ୍ଦ୍ୱଯୁଦ୍ଧ କରିବା ନିମନ୍ତେ ସମରଗୁପ୍ତ ଭିତରେ ପ୍ରବଳ ଆକାଂକ୍ଷା ଦେଖାଦେଲା । ସେ ମଲ୍ଲ-ରୀତିରେ ବାହାସ୍ଫୋଟ ମାରି ରାକ୍ଷସକୁ ଡାକରା ଦେଲେ ।

ରାକ୍ଷସ ତାଙ୍କୁ ଧରି ଖାଇବା ଲୋଭରେ ମାଡ଼ି ଆସୁଥିଲା, କିନ୍ତୁ ସମରଗୁପ୍ତଙ୍କର ଏ ଅଦ୍ଭୁତ ଆଚରଣ ଦେଖି ସେ ଚମକିପଡ଼ି ରହିଗଲା । ଜଣେ ମଣିଷ ତାକୁ ଦ୍ୱନ୍ଦ୍ୱଯୁଦ୍ଧ ପାଇଁ ଆହ୍ୱାନ କରିପାରେ; ଏକଥା ସେ କଳ୍ପନା ବି କରିପାରୁ ନଥିଲା ।

ପ୍ରବଳ ଉତ୍ସାହରେ ସମରଗୁପ୍ତ ରାକ୍ଷସ ଆଡ଼େ ଡେଇଁ ପଡ଼ିଲେ । ତାଙ୍କ ଗୋଡ଼ ବାଜି ଖଣ୍ଡିଏ

ବଡ଼ ପଥର ଛୁଟିକିଗଲା । ସେ ପଥର ମାଡ଼ରୁ ବଞ୍ଚିବା ପାଇଁ ରାକ୍ଷସ ଲୁଞ୍ଚିଗଲା । ସେତିକି-ବେଳେ ସମରଗୁପ୍ତ ତାକୁ ଗୋଟାଏ ଧକ୍କା ଦେଇ ତଳେ ପକାଇଦେଲେ ।

ରାକ୍ଷସର ମୁଣ୍ଡ ବୁଲାଇଦେଲା । ସେ କୌଣସି ମତେ ନିଜକୁ ସମ୍ଭାଳି ଉଠି ପଡ଼ିବା ବେଳକୁ ସମରଗୁପ୍ତ ତାକୁ ବିଧା ପରେ ବିଧା ଦେଇ ପୁଣି ତଳେ ପକାଇଦେଲେ । କିଛି ସମୟ ପର୍ଯ୍ୟନ୍ତ ଦୁହିଙ୍କ ଭିତରେ ଭୀଷଣ ଯୁଦ୍ଧ ଲାଗି ରହିଲା । ଶେଷରେ ରାକ୍ଷସ ମଲା । ସମରଗୁପ୍ତ ବି ଚେତା ହରାଇଲେ ।

ରାଜାଙ୍କର କେତେକ ଗୁପ୍ତଚର ଦୂରରେ ଠିଆ ହୋଇ ସେ ଭୟଙ୍କର ଦୃଶ୍ୟ ଦେଖୁଥିଲେ । ସେମାନେ ଦୌଡ଼ିଯାଇ ରାକ୍ଷସର ନିଧନ ସମ୍ବାଦ ରାଜାଙ୍କୁ ଦେବାରୁ ରାଜା ଖୁସି ହେଲେ, କିନ୍ତୁ ସଙ୍ଗେ ସଙ୍ଗେ ମନ୍ତ୍ରୀଙ୍କୁ ଚୁପି ଚୁପି କହିଲେ, "ରାକ୍ଷସର ନିଧନକାରୀକୁ କାଳବିଳମ୍ବ ନକରି ଆମେ ନିଧନ କରିବା ଆବଶ୍ୟକ । ଚାଲ!"

ଏହାପରେ ରାଜା, ମନ୍ତ୍ରୀ କେତେଜଣ ଦେହରକ୍ଷୀଙ୍କୁ ଧରି ଘଟଣା ସ୍ଥଳରେ ଯାଇ ପହଞ୍ଚିଲେ ।

ସେତେବେଳକୁ ସେଠାରେ ଅନ୍ୟ ଲୋକେ ପହଞ୍ଚି ଯାଇଥାନ୍ତି । ସେମାନେ ସମରଗୁପ୍ତଙ୍କ କ୍ଷତ ସ୍ଥାନରେ ଔଷଧ ଦେଇ ତାଙ୍କର ସେବା ଶୁଶ୍ରୂଷା କରୁଥାନ୍ତି । ସମରଗୁପ୍ତଙ୍କ ପ୍ରତି ସମସ୍ତଙ୍କର ଶ୍ରଦ୍ଧା ସୃଷ୍ଟି ହୋଇଥାଏ ।

ସମରଗୁପ୍ତ ରାଜାଙ୍କୁ ଅଭିବାଦନ କରନ୍ତେ ରାଜା କହିଲେ, "ଭଦ୍ରେ! ଆପଣ କିଏ ମୁଁ



ଜାଣେ ନା । କିନ୍ତୁ ପ୍ରଥମେ ମୁଁ ଭାବିଥିଲି ଆପଣ ବି ଜଣେ ରାକ୍ଷସ । ସେଥିପାଇଁ···"

"ସେଥିପାଇଁ ଆପଣ ହୁଏତ ମୋତେ ବଧ କରିବା ନିମନ୍ତେ ଭାବୁଥିଲେ । ଜଣେ ରାକ୍ଷସ ଆପଣଙ୍କ ପ୍ରଜାଙ୍କୁ ଏତେଦିନ ଯାଏ ଯାତନା ଦେଇଥିବା ସ୍ଥଳେ ସେମାନେ ଆଉ ଜଣେ ରାକ୍ଷସ କବଳରେ ପଡ଼ିବେ, ଏକଥା କେଉଁ ରାଜା ଚାହିଁବେ ? ତେଣୁ ଆପଣ କିଛି ଅନ୍ୟାୟ କରୁ ନଥିଲେ !" ସମରଗୁପ୍ତ କହିଲେ ।

ସମରଗୁପ୍ତଙ୍କ ବିବେକ ଓ ବିନୟ ଦେଖି ରାଜା ମୁଗ୍‌ଧ ହେଲେ । ସେ କହିଲେ, "ଭଦ୍ରେ ! ମୋର ସୈନ୍ୟଦଳର ବଳ ଅପେକ୍ଷା ରାକ୍ଷସର ବଳ ବେଶି ଥିଲା । କିନ୍ତୁ ଆପଣଙ୍କ ବଳ ରାକ୍ଷସର ବଳ ତୁଳନାରେ କି'ଣ ଅଧିକ ?"

"ମହାରାଜ ! ଥରେ ମୋ ଗୁରୁଙ୍କୁ ଗୋଟିଏ ପ୍ରଶ୍ନ କରିଥିଲି । ଉତ୍ତରରେ ସେ କହିଥିଲେ କି ଖାଲି ବଳ ଦ୍ୱାରା ବିଜୟ ଲାଭ ହୁଏନାହିଁ । ତାହାଠାରୁ ଅଧିକ କିଛି ଗୁଣ ଆବଶ୍ୟକ । ସେ ଗୁଣ କି'ଣ ସେ କହି ନଥିଲେ, କିନ୍ତୁ ବର୍ତ୍ତମାନ ମୁଁ ବୁଝୁଛି । ତାହା ଉତ୍ସାହ । ମୁଁ ଜଣେ ଉପଯୁକ୍ତ ପ୍ରତିଦ୍ୱନ୍ଦୀ ଖୋଜିବା ପାଇଁ ବାହାରିଥିଲି । ତେଣୁ ଲଢ଼ିବା ପାଇଁ ମୋର ଉତ୍ସାହ ଥିଲା । ରାକ୍ଷସ ଜଣେ ମଣିଷଠାରୁ ଲଢ଼େଇର ଆହ୍ୱାନ ଆଶା କରୁ ନଥିଲା ବୋଲି ଡରିଗଲା । ମୋର ଉତ୍ସାହ ସାଙ୍ଗକୁ ତା'ର ଭୟ ହେଲା ତା'ର କାଳ । ଆପଣଙ୍କ ସୈନିକମାନେ ତାକୁ ମୂଳରୁ ରାକ୍ଷସ ବୋଲି ଜାଣିଥିଲେ । ତେଣୁ ତାକୁ ସେମାନେ ଭୟଭୀତ ହୋଇ ସାମ୍ନା କରୁଥିଲେ ଓ ଛନ୍ଦଭଙ୍ଗ ଦେଉଥିଲେ ।" ସମରଗୁପ୍ତ କହିଲେ ।

ରାଜା ସମରଗୁପ୍ତଙ୍କୁ ପ୍ରାସାଦକୁ ନେଇଗଲେ । ସେ ସମ୍ପୂର୍ଣ୍ଣ ସୁସ୍ଥ ହେବା ପରେ ତାଙ୍କୁ ବିରାଟ ସମ୍ବର୍ଦ୍ଧନା ଦିଆଗଲା । ରାଜାଙ୍କଠାରୁ ବହୁତ ପୁରସ୍କାର ପାଇ ସମରଗୁପ୍ତ ବିଦାୟ ନେଲେ ।





# ଭାଗ୍ୟଚକ୍ର

ଭଗବାନ ବୁଦ୍ଧ ଯେତେବେଳେ ଜେତ ବନରେ ବାସ କରୁଥିଲେ, ସେତେବେଳେ ନିକଟବର୍ତ୍ତୀ ଅଞ୍ଚଳରେ ରହୁଥିଲେ ଅନାଥପିଣ୍ଡିକ ନାମକ ଜଣେ ବଣିକ ।

ଅନାଥପିଣ୍ଡିକ ବୁଦ୍ଧଙ୍କର ଅତ୍ୟନ୍ତ ଅନୁଗତ ଥିଲେ । ସେ ବିପୁଳ ଅର୍ଥବ୍ୟୟ କରି ବୁଦ୍ଧଙ୍କ ନିମନ୍ତେ ଗୋଟିଏ ଗୃହ ନିର୍ମାଣ କରିଦେଇଥିଲେ । ସେ ପ୍ରତିଦିନ ତିନି ତିନିଥର ବୁଦ୍ଧଙ୍କୁ ଦର୍ଶନ କରୁଥିଲେ ଓ ନିଜର ଶ୍ରଦ୍ଧାଭକ୍ତି ନିବେଦନ କରୁଥିଲେ । ତାଙ୍କ ଘର ଭିକ୍ଷୁମାନଙ୍କ ନିମନ୍ତେ ସର୍ବଦା ଉନ୍ମୁକ୍ତ ରହିଥିଲା । ପ୍ରତ୍ୟହ ଶହ ଶହ ଭିକ୍ଷୁ ତାଙ୍କ ଅତିଥିଶାଳାରେ ଭୋଜନ କରୁଥିଲେ । ମଧ୍ୟେ ମଧ୍ୟେ ସ୍ୱୟଂ ବୁଦ୍ଧଦେବ ତାଙ୍କ ଘରକୁ ଯାଉଥିଲେ ।

ଅନାଥପିଣ୍ଡିକଙ୍କର ବିରାଟ ମହଲର ଗୋଟିଏ ଅଂଶରେ ଜଣେ କ୍ଷୁଦ୍ରଦେବୀ ରହୁଥିଲେ । ସେ ଦେବୀ ବୁଦ୍ଧଙ୍କ ପ୍ରତି ଭୀଷଣ ଈର୍ଷା କରିବାକୁ ଲାଗିଲେ । ମାନବୀ ରୂପ ଗ୍ରହଣ କରି ସେ ଅନାଥପିଣ୍ଡିକଙ୍କର କୋଷାଧ୍ୟକ୍ଷଙ୍କୁ ଯାଇ କହିଲେ, "ବାବୁ, ତମେ ସେ ବୁଦ୍ଧଙ୍କୁ କାହିଁକି ବାରମ୍ବାର ଘରେ ପୂରାଉଛ? ତାହାଦ୍ୱାରା ଘରର ଅମଙ୍ଗଳ ହେବ ।"

କୋଷାଧ୍ୟକ୍ଷ ବିରକ୍ତ ହୋଇ ତାଙ୍କୁ ଅନାଇଲେ ଓ କହିଲେ, "ତମେ କିଏ? ଅନଧିକାର ଭିତରେ ତମର କି ପ୍ରୟୋଜନ?"

ଦେବୀ ସେଉଠୁ ଅନାଥପିଣ୍ଡିକଙ୍କର ପୁଅକୁ ଦେଖାକରି ଏକା କଥା କହିଲେ । ସେଠାରୁ ବି ସେ ତଡ଼ା ଖାଇଲେ ।

କ୍ରମେ ଅନାଥପିଣ୍ଡିକଙ୍କର ବ୍ୟବସାୟରେ କ୍ଷତି ହେବାକୁ ଲାଗିଲା । ତାଙ୍କ ସହ ବେପାର-ବଣିଜ କରୁଥିବା ବଣିକମାନଙ୍କ ଉପରେ ତାଙ୍କର କୋଟି କୋଟି ଟଙ୍କା ବାକି ଥିଲା ।

ଅନାଥପିଣ୍ଡିକ ସେମାନଙ୍କୁ ସେ ଟଙ୍କା ପରିଶୋଧ କରିବା ନିମନ୍ତେ ମୋଟେ ତାଗିଦା ଦେଲେ ନାହିଁ । ଫଳରେ ସେମାନେ ବି ଟଙ୍କା ଫେରାଇଲେ ନାହିଁ ।

ଏଣେ ଆଉ ଗୋଟାଏ ଦୁର୍ଘଟଣା ମଧ୍ୟ ଘଟିଗଲା । ଗୋଟାଏ ଗରାରେ ସ୍ୱର୍ଣ୍ଣମୁଦ୍ରା ପୂରାଇ ଅନାଥପିଣ୍ଡିକ ନଦୀ କୂଳରେ ପୋତି ରଖିଥିଲେ । ପ୍ରବଳ ବନ୍ୟାରେ ଅତଡ଼ା ଖସିବା ସଙ୍ଗେ ସଙ୍ଗେ ସେ ଗରା ନଦୀ ଗର୍ଭକୁ ଚାଲିଗଲା ।

ଏସବୁ ସତ୍ତ୍ୱେ ଅନାଥପିଣ୍ଡିକ ଦୈନିକ ଭିକ୍ଷୁମାନଙ୍କୁ ଭୋଜନ ଯୋଗାଇବା ବନ୍ଦ କଲେ ନାହିଁ । ତେବେ ଭୋଜନର ସେ ପରିପାଟି ଆଉ ରହିଲା ନାହିଁ ।

ବୁଦ୍ଧଦେବ ବଣିକଙ୍କର ଅସୁବିଧା ସମ୍ପର୍କରେ ଖବର ପାଇଥାନ୍ତି । ଦିନେ ସେ ଅତିଥିଶାଳା ଆଡ଼େ ଅନାଇ ପଚାରିଲେ, "ଅନାଥପିଣ୍ଡିକ! ତମର ଅଭାବ ସତ୍ତ୍ୱେ ତମେ ଭିକ୍ଷୁମାନଙ୍କ ସକାଶେ ଅତିଥିଶାଳା ଚାଲୁ ରଖିଛ ଦେଖୁଛି!"

"ଭଗବାନ! କ'ଣ ବା ମୁଁ ସେମାନଙ୍କୁ ଦେଇ ପାରୁଛି? ଅତି ସାଧାରଣ ଖାଦ୍ୟ ଛଡ଼ା ଆଉ କିଛି ଯୋଗାଇବାର ସାମର୍ଥ୍ୟ ମୋର ନାହିଁ ।" ଅନାଥପିଣ୍ଡିକ ଦୁଃଖିତ ଭାବରେ କହିଲେ ।

"ସେଥିରେ କିଛି ଯାଏ ଆସେ ନାହିଁ । ଖାଦ୍ୟର ପରିମାଣ ବା ବଡ଼ଲୋକି ନୁହେଁ, ତାହା ଦେବାରେ ତମର ଯେଉଁ ଆନ୍ତରିକତା ଅଛି, ତାହାହିଁ ତମର ବିଶେଷତ୍ୱ ।" ବୁଦ୍ଧଦେବ କହିଲେ ।



ଅନାଥପିଣ୍ଡକ ଅତ୍ୟନ୍ତ ଦୁର୍ଦ୍ଦିନର ସମ୍ମୁଖୀନ ହେବାର ଦେଖି ସେ କ୍ଷୁଦ୍ରଦେବୀ ଭାବିଲେ କି ବୁଦ୍ଧଙ୍କ ବିରୁଦ୍ଧରେ କହିବାର ଏହାହିଁ ଠିକ୍ ସମୟ । ସେ ଯାଇ ଅନାଥପିଣ୍ଡକଙ୍କ ଆଗରେ ଆବିର୍ଭୂତ ହେଲେ ଓ କହିଲେ, "ମୁଁ ତମର ପ୍ରାସାଦର ଗୋଟାଏ ଅଞ୍ଚଳରେ ବହୁଦିନରୁ ରହିଥିବା ଜଣେ ଦେବୀ । ତମେ ସେ ବୁଦ୍ଧଙ୍କୁ ଘରେ ପୂରାଇବା ଯୋଗୁଁ ତମର ଅକଲ୍ୟାଣ ହେଉଛି । ତା' ସହ ଆଉ ସମ୍ପର୍କ ରଖନାହିଁ । ତାଙ୍କୁ ବିଦା କରିଦିଅ ।"

"ଦସ୍ୟାଙ୍କର ତମେ ଏଇକ୍ଷଣି ମୋ ଘରୁ ବିଦା ହୋଇଗଲ!" କହିଲେ ଅନାଥପିଣ୍ଡକ ।

ଦେବୀ ବଡ଼ ଅପମାନ ବୋଧ କଲେ ଓ କହିଲେ, "ତମେ ଭାବୁଛ ମୋତେ ଆଉ ସ୍ଥାନ ମିଳୁ ନାହିଁ?" ସେ ରାଗ ତମତମ ହୋଇ ବାହାରିଗଲେ ।

ବାହାରିଗଲେ ସିନା, କିନ୍ତୁ ରହିବା ଭଳି ଉପଯୁକ୍ତ ସ୍ଥାନ ବାସ୍ତବିକ ଆଉ ପାଇଲେ ନାହିଁ । ଅନାଥପିଣ୍ଡକଙ୍କ ଘରର ଯେଭଳି ପବିତ୍ର ପରିବେଶ, ଉଦ୍ୟାନ, ପୁଷ୍କରିଣୀ ଇତ୍ୟାଦି ଥାଇ ଯେଉଁ ବିରାଟ ମହଲ, ସେପରି ଆଶ୍ରୟ ଆଉ କେଉଁଠି ହେଲେ ସେ ମୂଲକରେ ନଥିଲା ।

ଦେବୀ ବହୁତ ଛଟପଟ ହୋଇ ଜେତବନର ଗ୍ରାମ୍ ଦେବତାଙ୍କୁ ଭେଟିଲେ ଓ ନିଜର ଦୁଃଖ ଜଣାଇଲେ । ଗ୍ରାମ ଦେବତା କହିଲେ, "ତମେ ପୁଣି ଅନାଥପିଣ୍ଡକଙ୍କ ଘରେ ଯାଇ ରହିବାକୁ ଚାହଁ, କିନ୍ତୁ ସେପାଇଁ ସଙ୍କୋଚ ଅନୁଭବ କରୁଛ । ଏଇଆ ତ? ତୁମେ



ତାଙ୍କର କିଛି ଉପକାର କର । ଫଳରେ ତମର ଆଉ ସଙ୍କୋଚ କରିବାର କାରଣ ରହିବ ନାହିଁ । ତମେ ତାଙ୍କ କୋଷାଧ୍ୟକ୍ଷର ରୂପ ଧରି ତାଙ୍କୁ ଯେଉଁ ବଣିକମାନେ ଟଙ୍କା ଦେବାର କଥା; ସେମାନଙ୍କୁ ସାକ୍ଷାତ କରି ସେସବୁ ଟଙ୍କା ଅସୁଲ କର । ତମର ଯେତିକି ଦୈବୀ ଶକ୍ତି ଅଛି, ତାହା ପ୍ରୟୋଗ କରି ମାଗିଲେ ସେମାନେ ଦେଇଦେବେ । ଦ୍ୱିତୀୟରେ ଅନାଥପିଣ୍ଡିକଙ୍କର ଯେଉଁ ଗଚ୍ଛିଟି ବନ୍ୟାରେ ଭସି ଯାଇଥିଲା, ତାହା ନଈ ମଝିରେ ଗୋଟାଏ ଟାପୁରେ ଲଖି ରହିଛି । ତାକୁ ଉଦ୍ଧାର କରି ତାଙ୍କୁ ଦିଅ ।"

ସେ କ୍ଷୁଦ୍ରଦେବୀ ତାହାହିଁ କଲେ । ବଣିକ-ମାନଙ୍କଠାରୁ ଅସୁଲ ହୋଇଥିବା ଟଙ୍କା ଓ ସେ ଗଚ୍ଛିକୁ ଧରି ସେ ଅନାଥପିଣ୍ଡିକଙ୍କ ଆଗରେ ପହଞ୍ଚିଲେ ଓ ତାଙ୍କୁ ସବୁ କହିଲେ ।

"ତମେ ବୁଦ୍ଧଙ୍କୁ ଅପମାନ କରି କଥା କହିଛ । ତାଙ୍କୁ କ୍ଷମା ପ୍ରାର୍ଥନା କର ।" ଅନାଥପିଣ୍ଡିକ ଏହା କହି ସେ ଦେବୀଙ୍କୁ ବୁଦ୍ଧଙ୍କ ପାଖକୁ ନେଇଗଲେ ।

ବୁଦ୍ଧ କହିଲେ, "ଜଣେ ଯେତେବେଳେ ନିଜକୁ ସୁହାଇଲା ଭଳି କୌଣସି କାମରେ ମଜ୍ଜି ରହିଥାଏ, ତା' ପରିଣତିରେ ଦୁଃଖ ଥାଇପାରେ ବୋଲି ଭାବୁ ନଥାଏ । ଜଣେ ଯେତେବେଳେ କଷ୍ଟକର କାମରେ ବ୍ୟାପୃତ ରହିଥାଏ, ତା'ର ପରିଣତି ଭଲ ହୋଇପାରେ ବୋଲି ଜାଣି ନଥାଏ । ଏ ଦେବୀ ମୋତେ ତଡ଼ିବାକୁ ବେଶ୍ ସୁଖକର ବୋଲି ଭାବୁଥିଲେ । ତା'ର ପରିଣତିରେ ନିଜେ କପରି ହଇରାଣ ହେବେ, ସେକଥା ଭାବୁ ନଥିଲେ । ଅନାଥ-ପିଣ୍ଡିକ ନିଜର ଅଭାବ ଦେଖି ମ୍ରିୟମାଣ ହେଉଥିଲେ, ନିଜର କର୍ମ ମଙ୍ଗଳପ୍ରଦ ହୋଇପାରେ ବୋଲି ଜାଣୁ ନଥିଲେ ।" ଏହାପରେ ବୁଦ୍ଧ ଦେବୀଙ୍କୁ କ୍ଷମା କଲେ । ଦେବୀ ଓ ତାଙ୍କର ସନ୍ତାନମାନେ ଅନାଥ-ପିଣ୍ଡିକଙ୍କ ମହଲରେ ରହିଲେ ।





ଭାରତ-କାହାଣୀ

# ହୁମାୟୁନ ଓ ଶେରଶାହ୍

୧୩ ବର୍ଷ ବୟସରେ ୧୫୩୦ ମସିହାରେ ହୁମାୟୁନ ଭାରତରେ ପ୍ରତିଷ୍ଠିତ ମୋଗଲ ମୂଲକ ଉପରେ ରାଜା ହେଲେ । ତାଙ୍କ ରାଜଧାନୀ ହେଲା ଆଗ୍ରା । ସେ ବିଳାସ ବ୍ୟସନ ଭଲ ପାଉଥିଲେ; କଳା ପ୍ରତି ବି ତାଙ୍କର ଆଗ୍ରହ ଥିଲା । କିନ୍ତୁ ଶାସନ ଦିଗରେ ସେ ଧ୍ୟାନ ଦେଲେ ନାହିଁ ।

ସେତିକିବେଳେ ଭାରତରେ ଶେରଶାହ୍ ନାମକ ଜଣେ ଆଫଗାନ ସେନାପତି କ୍ରମେ ବଳଶାଳୀ ହୋଇ ଉଠୁଥିଲେ । ତାଙ୍କ ମୂଳ ନାମ ଥିଲା ଫରିଦ୍ । ତାଙ୍କ ବାପା ବିହାରର ସାସାରାମଠାରେ ଜଣେ ଜାଗିର୍‌ଦାର୍ ଥିଲେ । ବିମାତାର ତାଡ଼ନା ସହି ନପାରି ସେ ଜୌନପୁର ପଳାଇ ଆସିଥିଲେ । ତାଙ୍କ ଭାଗ୍ୟ ବଦଳିବାକୁ ଲାଗିଲା ।





ଯୁବକ ଫରିଦ୍ ଦିନେ ଗୋଟାଏ ବାଘ ହାବୁଡ଼ରେ ପଡ଼ିଲେ ଓ ଏକାକୀ ତା' ସହ ଲଢ଼ି ତାକୁ ମାରିଦେଲେ । ତାଙ୍କର ଏହି ସାହସିକ କାର୍ଯ୍ୟ ଯୋଗୁଁ ବିହାରର ସୁଲ୍‌ତାନ୍ ତାଙ୍କୁ ଶେର୍‌ଶାହ୍ ବୋଲି ନାମ ଦେଲେ । ଶେର୍‌ଶାହ୍ ବାବରଙ୍କ ସାମରିକ କଳ କୌଶଳ ଭଲଭାବରେ ଲକ୍ଷ୍ୟ କରିଥିଲେ ।



ଶେର୍ ଶାହ୍ ଘଟଣା କ୍ରମେ ବିହାରର ଶାସକ ହେଲେ । ତାଙ୍କ ସହ ହୁମାୟୁନଙ୍କର ବାରମ୍ବାର ସଂଘର୍ଷ ହେଲା । କିନ୍ତୁ ପ୍ରାୟ ସବୁଥର ହୁମାୟୁନଙ୍କର ପରାଜୟ ହେଉଥାଏ । ଏହାର କାରଣ ସୈନ୍ୟସଂଗଠନ ବା ଯୁଦ୍ଧ ପ୍ରତି ହୁମାୟୁନଙ୍କର ଉତ୍ସାହ ନଥାଏ । କିନ୍ତୁ ଶେର୍ ଶାହ୍ ସେ ଦିଗରେ ପ୍ରବଳ ଉତ୍ସାହୀ ଥିଲେ ।

ଥରେ ଶେରଶାହଙ୍କ ସୈନ୍ୟଦଳ ହୁମାୟୁନ ପକ୍ଷର ସୈନ୍ୟଦଳକୁ ଏମିତି ଭାବରେ ଘେରିଗଲେ ଯେ ମୋଗଲ ପକ୍ଷ ପ୍ରାଣ ବିକଳରେ ଗଙ୍ଗା ନଦୀ ଭିତରକୁ ଡେଇଁ ପଡ଼ିଲେ । ଶହ ଶହ ସୈନ୍ୟ ମଲେ । ହୁମାୟୁନ ନିଜେ ଭଲ ଭାବରେ ସନ୍ତରଣ ଶିଖି ନଥିଲେ । ତେଣୁ ସେ କଲବଲ ହେଲେ ।






ହୁମାୟୁନ ଯେତେବେଳେ ଜଳ-ସ୍ରୋତରେ ଭାସି ଯାଉଛନ୍ତି, ସେତିକି-ବେଳେ ଜଣେ ଭିସ୍ତି ତାଙ୍କୁ ଦେଖି ପକାଇଲା । ଚମଡ଼ା ଥଳିରେ ପାଣି ବୋହିବା ଭିସ୍ତିର କାମ । ସେ ହୁମାୟୁନଙ୍କୁ ତା' ଭାସମାନ ଥଳି ଉପରେ ଭର ଦେବାକୁ କହିଲା । ହୁମାୟୁନ ତାହାହିଁ କଲେ । ଭିସ୍ତି ସେ ଥଳିକୁ ଠେଲି ଠେଲି ନଈ ଆରପାରିକୁ ନେଇଗଲା ।



ପରବର୍ତ୍ତୀ ସମୟରେ ହୁମାୟୁନ ସେ ଭିସ୍ତିକୁ ଦିନକ ସକାଶେ ଦିଲ୍ଲୀର ରାଜଗାଦିରେ ବସିବାର ସୁଯୋଗ ଦେଇ ନିଜ କୃତଜ୍ଞତା ପ୍ରକଟ କଲେ । ଭିସ୍ତି ତା'ର ସେ ଚମଡ଼ା ଥଳିକୁ କାଟି ସେଥିରୁ ଖଣ୍ଡିଏ ଖଣ୍ଡିଏ ତା' ସାଙ୍ଗସାଥି ଆତ୍ମୀୟ ସ୍ୱଜନଙ୍କୁ ତା' ଜୀବନରେ ସେ ଅଭୁଲ ଦିନର ସ୍ମୃତି ହିସାବରେ ଉପହାର ଦେଲା ।

ବାରମ୍ବାର ଯୁଦ୍ଧ କରିବାକୁ ପଡ଼ିବାରୁ ହୁମାୟୁନ ବିରକ୍ତ ହୋଇଗଲେ । ସେ ଆଗ୍ରା ତ୍ୟାଗ କରି କିଛୁଦିନ ସକାଶେ ଅମରକୋଟର ହିନ୍ଦୁ ରାଜାଙ୍କ ନଅରରେ ଆଶ୍ରୟ ଗ୍ରହଣ କଲେ । ସେହିଠାରେ ତାଙ୍କ ରାଣୀ ବେଗମ ହାମିଦା ବାନୁ ଏକ ପୁତ୍ର ସନ୍ତାନ ଜନ୍ମ ଦେଲେ । ଏହି ସନ୍ତାନହିଁ ପରବର୍ତ୍ତୀ ସମୟରେ ଆକବର ନାମରେ ବିଖ୍ୟାତ ହେଲା ।





ଶେରଶାହ ଦିଲ୍ଲୀ ଅଧିକାର କରିନେଲେ ଓ ପୂର୍ବ ଭାରତର ଅନେକ ଅଞ୍ଚଳ ସମେତ ଉତ୍ତର ଭାରତର କେତେକ ପାର୍ବତ୍ୟ ରାଜ୍ୟ ବି ନିଜ ଦଖଲକୁ ଆଣିଲେ । ଶେରଶାହ ନିଜ ରାଜ୍ୟରେ ବହୁ ପ୍ରକାର ସଂସ୍କାର ମୂଳକ କାର୍ଯ୍ୟ କଲେ ଓ ଶାସନ କଳକୁ ଦୃଢ଼ କଲେ । ସେ ଥିଲେ ଜଣେ ଦକ୍ଷ ତଥା ଆଦର୍ଶ ଶାସକ । ତାଙ୍କ ବଂଶ ଇତିହାସରେ ସୁର ବଂଶ ବୋଲି ବିଦିତ ।

ଶେରଶାହ ଶେର ଖାଁ ନାମ ଗ୍ରହଣ କଲେ ଓ ରାଜପୁତମାନଙ୍କ ସହ ଅନେକ ଥର ଯୁଦ୍ଧ କଲେ । କାଲିଞ୍ଜର ଦୁର୍ଗ ପାଖରେ ଯୁଦ୍ଧ ଚାଲିଥିବା ବେଳେ ତାଙ୍କ ବାରୁଦ ଭଣ୍ଡାର ଉପରେ ଗୋଟାଏ ଅଗ୍ନି କଣା ଉଡି ଆସି ପଡିବାରୁ ତାହା ହଠାତ୍ ଜଳି ଉଠିଲା । ଶେରଶାହ ପାଖରେ ଥିଲେ ଓ ଆହତ ହେଲେ । କିଛିଦିନ ପରେ ତାଙ୍କର ମୃତ୍ୟୁ ହେଲା ।





ଶେରଶାହ୍‌ଙ୍କ ମୃତ୍ୟୁ ସମ୍ବାଦ ଓ ପରେ ପରେ ତାଙ୍କ ରାଜ୍ୟରେ ବିଶୃଙ୍ଖଳା ଦେଖାଦେଇଥିବାର ସମ୍ବାଦ କାନ୍ଦାହାରରେ ଯାଇ ରହିଥିବା ହୁମାୟୁନଙ୍କ କାନରେ ପଡିଲା । ପନ୍ଦର ବର୍ଷ ପରେ ସେ ପୁଣି ନିଜ ହୃତ ରାଜ୍ୟ ଫେରି ପାଇବା ଆଶାରେ ସସୈନ୍ୟ ଭାରତ ଆସିଲେ । ଇତିମଧ୍ୟରେ ସେ ଅଧିକ ସତର୍କ ହେବାକୁ ଶିଖିଥିଲେ ।

୧୫୫୫ ମସିହାରେ ହୁମାୟୁନ ଲାହୋର ଆଗ୍ରା ଏବଂ ଦିଲ୍ଲୀ ସହଜରେ ଅଧିକାର କଲେ । ଭାରତରେ ପୁଣି ମୋଗଲ ଶାସନ ଚାଲିଲା । କିନ୍ତୁ ରାଜ୍ୟ ଭୋଗ କରିବା ତାଙ୍କ ଭାଗ୍ୟରେ ନଥିଲା । ସେ ନିଜ ପାଠାଗାରକୁ ଯାଉଥିବା ପଥର ସିଢ଼ି ଉପରୁ ଗୋଡ଼ ଖସିଯିବାରୁ ତଳକୁ ଗଡ଼ି ଆସିଲେ । ୧୫୫୬ ମସିହାରେ ତାଙ୍କର ମୃତ୍ୟୁ ହେଲା ।






# ବିଚିତ୍ର ଦୃଷ୍ଟି

ଗୋଟିଏ ଗାଁରେ ରହୁଥିଲେ ତିନି ବନ୍ଧୁ— ରଘୁ, ରାଜୁ ଓ ରମେଶ। ତିନିଜଣଯାକ ପିଲାବେଳେ ଏକାଠି ଖେଳୁଥିବା ବେଳେ ଥରେ କୌଣସି ବିଷାକ୍ତ ଅଠା ସେମାନଙ୍କ ଆଖିରେ ପଡ଼ିଯାଇଥିଲା। ଫଳରେ ତିନିଜଣଯାକଙ୍କର ଦୃଷ୍ଟିଶକ୍ତି କ୍ଷୀଣ ହୋଇଯାଇଥାଏ।

ଦିନେ ତିନିବନ୍ଧୁ ଠାଏଁ ବସି ଗପସପ ହେଉଛନ୍ତି, ରଘୁ କହିଲା, "ମୋ ଦୃଷ୍ଟିଶକ୍ତିରେ ବହୁତ ଉନ୍ନତି ହେଲାଣି। ନଈରେ ମାଛ ଭାସୁଥିବାର ଦେଖିଲେ ମୁଁ ତା'ର ବୟସ କହିଦେବି!"

"ହେଇଟି ରଘୁ! ଏମିତି ବାହାପିଆ କଥା କହନା। ତୁ ଏଇ ସେଦିନ ଗୋଟାଏ କୁକୁର ମାଡି ପକାଇଥିଲୁଟି?" ରାଜୁ କହିଲା।

"ଆରେ, ସେଦିନ କୁକୁର ମାଡି ପକାଇଲି ବୋଲି ଆଜି ମୋ ଆଖି ଭଲ ହେବ ନାହିଁ, ଇଏ କେଉଁ ପ୍ରକାର ଯୁକ୍ତି?" ରଘୁ ପ୍ରତିବାଦ କରି କହିଲା।

ରଘୁ ଓ ରାଜୁ ଝଗଡ଼ା କଲେ। ରମେଶ ସେମାନଙ୍କୁ ବାଧା ଦେଇ କହିଲା, "ଆରେ ଭାଇ, ଏମିତି ପାଟିଗୋଳ କଲେ କ'ଣ ହେବ? ମୁଁ ତମ ଦୁହିଁଙ୍କଠାରୁ ବୟସରେ ସାନ। ମୋ ଦୃଷ୍ଟିଶକ୍ତି ତମ ଦୁହିଙ୍କଠାରୁ ଭଲ। ଚାଲ, ପରୀକ୍ଷା କରି ଦେଖିବା।"

ରଘୁ ଓ ରାଜୁ ଏଥିରେ କିଛି କହିପାରିଲେ ନାହିଁ। ସେମାନେ ଚୁପ୍ ରହିଲେ।

ରମେଶ ଉତ୍ସାହିତ ହୋଇ କହିଲା, "କ'ଣ, ମୁଁ ଠିକ୍ କହିଲି ନା ନାହିଁ? ପରୀକ୍ଷା କରି ଦେଖାଯାଉ। ଯାହାର ଦୃଷ୍ଟିଶକ୍ତି ସବୁଠାରୁ ଭଲ, ସେ ତାହା ପ୍ରମାଣ କରିଦେଉ।"

"ହଁ, ହଁ, ତାହାହିଁ ହେଉ। ପ୍ରମାଣ କରିବାରେ ବା ବାଧା କ'ଣ? ଏହାତ ବେଶ

ପଚିଶ ବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ



"ଯୁକ୍ତିଯୁକ୍ତ କଥା।" ରଘୁ ଓ ରାଜୁ ବାଧ୍ୟ ହୋଇ କହିଲେ।

ରମେଶ ହାତ ତାଳି ଦେଲା।

"କେମିତି ପରୀକ୍ଷା କରିବା?" ରଘୁ ପଚାରିଲା।

"ଗୋଟିଏ କାମ କରାଯାଉ। ଶେଠ୍ ମଦନଲାଲ୍ ଯେଉଁ ଅତିଥିଶାଳା ବସାଇଛନ୍ତି, ତାହାର ଫାଟକ ଆଗରେ ଗୋଟିଏ ପଥର ଫଳକ କାଲି ସକାଳେ ଯୋଖା ହେବ ବୋଲି ଶୁଣିଲି। କାଲି ସକାଳେ ଆମେ ତିନିହେଁ ଯିବା। ଯିଏ ସେ ଫଳକ ସ୍ପଷ୍ଟ ଭାବରେ ପଢ଼ିଦେବ, ତାହାର ଦୃଷ୍ଟିଶକ୍ତି ସବୁଠାରୁ ଭଲ ବୋଲି ପ୍ରମାଣିତ ହେବ। ତାକୁ ଅନ୍ୟ ଦୁଇଜଣ ଖାଇବାକୁ ଦେବେ। ହେଲା?" ରମେଶ କହିଲା।

"ହେଲା!" ରଘୁ ଓ ରାଜୁ ଏ ପ୍ରସ୍ତାବରେ ରାଜି ହେଲେ।

ରଘୁ ଓ ରମେଶ ସେଠାରୁ ବିଦାୟ ହୋଇଯିବା ପରେ ସନ୍ଧ୍ୟାବେଳେ ରଘୁ ଯାଇ ଅତିଥିଶାଳା ଦାୟିତ୍ୱରେ ଥିବା ଶେଠ୍ ମଦନଲାଲ୍‌ଙ୍କ ଗୁମାସ୍ତାଙ୍କୁ ଗୋଟିଏ ନମସ୍କାର ପକାଇଲା।

"କହୋ ରଘୁ, କୁଆଡ଼େ ଆସିଲ?" ଗୁମାସ୍ତା ପଚାରିଲେ।

"ଏଇବାଟେ ଯାଉଥିଲି, କହିଲି ଗୁମାସ୍ତାଙ୍କୁ ଭେଟି ହୋଇଯାଏଁ। କାଲି କୁଆଡ଼େ ଅତିଥିଶାଳା ଆଗରେ ଗୋଟିଏ ଫଳକ ଦେଖିବାକୁ ମିଳିବ?" ରଘୁ ପଚାରିଲା।

"ହଁ।"

"ସେଥିରେ କ'ଣ ଲେଖାଅଛି ଆଜ୍ଞା?"

"ଖାଲି 'ମାତୃଶରଣମ୍' ବୋଲି ଲେଖାଅଛି।" ଗୁମାସ୍ତା ଉତ୍ତର ଦେଲେ। ରଘୁ ଚାଲିଗଲା।

କିଛି ସମୟ ପରେ ରାଜୁ ଆସି ପହଞ୍ଚିଗଲା ଓ ଗୁମାସ୍ତାଙ୍କୁ ନମସ୍କାର ପକାଇ ପଚାରିଲା, "ବାବୁ, କାଲି ସକାଳକୁ କୁଆଡ଼େ ଫଳକଟିଏ ଲାଗିଥିବ?"

"ହଁ! କାହିଁକି?" ଗୁମାସ୍ତା ଏଥର ଆଶ୍ଚର୍ଯ୍ୟ ହୋଇ ପଚାରିଲେ।

"ନାହିଁ, ଏମିତି କିଛି କାରଣ ନାହିଁ ତେବେ ସେଥିରେ ଲେଖାଥିବ କ'ଣ ?" ପଚାରିଲା ରାଜୁ ।

"ମାତୃଶରଣମ୍ ବୋଲି ଲେଖା ଅଛି ।"

"ବାବୁ, ସେ ଫଳକର ଓ ଅକ୍ଷରର ରଙ୍ଗ କ'ଣ ?"

"ଫଳକ ଧଳା । ଶଙ୍ଖ ମଲମଲ ପଥର । ଅକ୍ଷର ସୁନେଲି ।" ଗୁମାସ୍ତା କହିଲେ ।

ରାଜୁ ତାଙ୍କୁ ଧନ୍ୟବାଦ ଦେଇ ଚାଲିଗଲା । ପରେ ପରେ ପହଞ୍ଚିଲା ରମେଶ । ସେ ବି ଗୁମାସ୍ତାଙ୍କୁ ଏକା ପ୍ରଶ୍ନ କଲା ଓ ଗୁମାସ୍ତା ଏକା ଉତ୍ତର ଦେଲେ । କିନ୍ତୁ ସେ ଗୋଟାଏ ଅଧିକା ପ୍ରଶ୍ନ କଲା, "ବାବୁ "ତଲେ କ'ଣ ଦାତାଙ୍କ ନାମ ଉଲ୍ଲେଖ ନାହିଁ ?"

"ହଁ, ଶେଠ୍ ମଦନଲାଲଙ୍କ ନାମ ଛୋଟ ଅକ୍ଷରରେ ଲେଖା ଅଛି ।" ଗୁମାସ୍ତା କହିଲେ ।

ରମେଶ ଖୁସି ହୋଇ ଚାଲିଗଲେ ।

ପରଦିନ ଖୁବ୍ ସକାଳେ ରାଜୁ ଓ ରମେଶ ଯାଇ ରଘୁ ଘରେ ପହଞ୍ଚିଲେ । ତିନିହେଁ ତା'ପରେ ଅତିଥିଶାଳା ଆଡ଼େ ଚାଲିଗଲେ ।

ବାଙ୍କ ବୁଲିବା ମାତ୍ରେ ଯେମିତି ଅତିଥିଶାଳା ଦୂରରୁ ଦେଖାଯାଇଛି, ରଘୁ ପାଟିକରି କହିଲା, "ହେଇତ ! ପାଖକୁ ଯିବା କଣ ଦରକାର ? ମୁଁ ସ୍ପଷ୍ଟ ପଢ଼ି ପାରୁଛି । ଫଳକରେ ଲେଖା ହୋଇଛି, ମାତୃଶରଣମ୍ ।" ମୁଁ ବି ପଢ଼ି ପାରୁଛି । ଆଚ୍ଛା କହିଲ, ପଥରର ରଙ୍ଗ ଓ




ଅକ୍ଷରର ରଙ୍ଗ କ'ଣ ?" ରାଜୁ ପଚାରିଲା ।

"କ'ଣ, ତୁ ତାହା ଦେଖି ପାରୁଛୁ ?" ରଘୁ ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

"ଜରୁର୍ ! ପଥର ଧଳା । ଅକ୍ଷର ସୁନେଲି ।" ରାଜୁ ଉତ୍ତର ଦେଲା ।

"ମଲା, ମଲା, ଏତକ କିଏ ଦେଖି ନ ପାରିବ ? ସବା ତଲେ କ'ଣ ଲେଖା ହୋଇଛି କହିଲ ଭଲା ?" ପଚାରିଲା ରମେଶ ।

"ଆଉ ତ କିଛି ଲେଖା ନାହିଁ !" ରଘୁ ଓ ରାଜୁ କହିଲେ ।

ଅଟ୍ଟହାସ୍ୟ କଲା ରମେଶ । "ତଲେ ଲେଖା ହୋଇଛି ଶେଠ ମଦନ୍‌ଲାଲ୍‌ଙ୍କ ନାମ । ମୁଁ ପଢ଼ି ପାରୁଛି ।" କହିଲା ରମେଶ ।

"ବେଶ୍ । ମୁଁ ପ୍ରଥମେ ପଢ଼ିଦେଲି । ତେଣୁ ମୋର ଜୟ ହେଲା । ରମେଶ ସମ୍ପଦାୟ ପଢ଼ିଦେଲା । ତେଣୁ ତା'ର ବିଜୟ ହେଲା । ଅତଏବ ରାଜୁ ଆମ ଦୁଇଜଣଙ୍କୁ ଖାଇବାକୁ ଦେଉ ।" ରଘୁ ତା' ବିଚାର ଶୁଣାଇଦେଲା ।

"ନା, ତମେମାନେ ଯାହା କହିଲ, ତାହା ଠିକ୍ ବୋଲି ଆଗେ ପ୍ରମାଣ ହେବା ଦରକାର ତ?" ରାଜୁ କହିଲା ।

"ପ୍ରମାଣ କରିଦେବା ବର୍ତ୍ତମାନ!" କହିଲା ରମେଶ । ସେତିକିବେଳେ ସେ ବାଟେ ଯାଉଥିଲେ ଗୁମାସ୍ତା । ପ୍ରଥମେ ନିଜ ନିଜର ଦୁର୍ବଳ ଦୃଷ୍ଟିଶକ୍ତି ଯୋଗୁଁ ତିନିବନ୍ଧୁ ତାଙ୍କୁ ଚିହ୍ନି ପାରିଲେ ନାହିଁ । ସେମାନେ ଡାକିଲେ, "ହଇହୋ ବାବୁ! ଟିକିଏ ରୁହ ।"

ଗୁମାସ୍ତା ରହିଗଲେ ।

"ଆଚ୍ଛା ବାବୁ, ସେ ଫଳକରେ ମାତୃ-ଶରଣମ୍ ବୋଲି ଲେଖା ଅଛିଟି?" ରଘୁ ପଚାରିଲା ।

"ହଁ ।" ଗୁମାସ୍ତା ମଉଜରେ କହିଲେ ।

"ଆଚ୍ଛା, ଧଳା ପଥର ଉପରେ ସୁନେଲି ରଙ୍ଗରେ ଲେଖା ହୋଇଛିଟି?" ପଚାରିଲା ରାଜୁ ।

"ହଁ । ଠିକ୍ ।"

"ଆଚ୍ଛା, ତଳେ ଶେଠ୍ ମଦନଲାଲ୍‌ଙ୍କ ନାମ ଲେଖା ଅଛି ତ?" ପଚାରିଲା ରମେଶ ।

"ହଁ, ହଁ । ସବୁ ଠିକ୍ । କିନ୍ତୁ କଥା ହେଲା, ଫଳକ ଏଯାଏ ସ୍ଥାପିତ ହୋଇନାହିଁ । ଆଉ ଘଣ୍ଟାଏ ପରେ ଶୁଭ ମୁହୂର୍ତ୍ତରେ ହେବ । ବର୍ତ୍ତମାନ କନା ଗୁଡ଼ା ହୋଇ ଅତିଥିଶାଳା ଭିତରେ ଅଛି । କିନ୍ତୁ ତମ ତିନିଜଣଙ୍କ ଦୃଷ୍ଟିଶକ୍ତି ବାସ୍ତବିକ ଅପୂର୍ବ । ନହେଲେ ଅତିଥିଶାଳାର କାନ୍ଥ ଭେଦି, କନା ଭେଦ କରି ଫଳକ ପଢ଼ି ପାରନ୍ତ? ବାଃ ବାଃ! ଏଇଥି-ପାଇଁ ତିନିହେଁ କାଲି ଜଣଜଣ କରି ମୋ ପାଖକୁ ଆସୁଥିଲ ପରା । ହାଃ ହାଃ!" ଗୁମାସ୍ତା ହସି ହସି ବେଦମ ହୋଇଗଲେ ।

ତିନିବନ୍ଧୁଙ୍କ ମୁହଁ ଲାଜରେ ଲାଲ୍ ପଡ଼ିଗଲା ।





# ସମ୍ରାଟଙ୍କ ଉପଦେଷ୍ଟା

ବହୁ ଯୁଗ ତଳେ ଏକ ବିଶାଳ ସାମ୍ରାଜ୍ୟ ଉପରେ ରାଜୁତି କରୁଥିଲେ ସମ୍ରାଟ ରାଜ୍ୟବର୍ଦ୍ଧନ । ତାଙ୍କ ଅଧୀନରେ ଅନେକ ସାମନ୍ତ ରାଜା ଥିଲେ ।

ଜୟଗଡ଼ର ରାଜା ଆନନ୍ଦଚନ୍ଦ୍ର ସେହି ସାମନ୍ତ ରାଜାଙ୍କ ଭିତରେ ଥିଲେ ଅନ୍ୟତମ । ସେ ଥିଲେ ଅତ୍ୟନ୍ତ ଖାମ୍‌ଖିଆଲି ।

ଥରେ ସେ ତାଙ୍କର ମନ୍ତ୍ରୀଙ୍କୁ କହିଲେ, "ତମେ ମୋ ରାଜ୍ୟର ନାନା ସମସ୍ୟା ନେଇ ମୁଣ୍ଡ ବୁଲାଉଛ । ତମକୁ କେତେଜଣ ଉପଦେଷ୍ଟା ଯୋଗାଇ ଦେବି । ସେମାନେ ସବୁ ସମସ୍ୟାର ସମାଧାନ ବିଗରେ ତମକୁ ପରାମର୍ଶ ଦେବେ । ଶାସନକାର୍ଯ୍ୟ ଭଲରେ ଚାଲିବ ।"

ମନ୍ତ୍ରୀଙ୍କର କୌଣସି ଉପଦେଷ୍ଟା ଦରକାର ନଥିଲେ । କିନ୍ତୁ ରାଜାଙ୍କୁ ମନା କଲେ ତାଙ୍କର ରାଗ ବଢ଼ିଯିବ । ତେଣୁ ସେ କିଛି କହିଲେ ନାହିଁ ।

ରାଜା ପ୍ରଥମେ ଦୁଇଜଣ ଉପଦେଷ୍ଟା ନିଯୁକ୍ତ କଲେ । ପରେ ପରେ ଆଉ କେତେକଣ ସେ ପଦ ପାଇବା ନିମନ୍ତେ ରାଜାଙ୍କୁ ଖୋସାମୋଦ କରିବାକୁ ଲାଗିଲେ । ଦୁଇ ତିନିମାସ ଭିତରେ ପନ୍ଦରଜଣ ସରିକ ପରାମର୍ଶଦାତା ନିଯୁକ୍ତ ହୋଇଗଲେ ।

କ୍ରମେ ସେମାନେ ମନ୍ତ୍ରୀଙ୍କୁ ପରାମର୍ଶ ଦେବା ପରିବର୍ତ୍ତେ ସିଧାସଳଖ ରାଜାଙ୍କୁ ପରାମର୍ଶ ଦେବାକୁ ଲାଗିଲେ । ମନ୍ତ୍ରୀ ସେମାନଙ୍କ ପରାମର୍ଶ ପସନ୍ଦ କରୁ ନଥିଲେ ବୋଲି ସେମାନେ ବୁଝି ପାରୁଥିଲେ ।

ଜଣେ ଥିଲେ ଲୁଣ ବେପାରୀ । ସେ ଦିନେ ରାଜାଙ୍କୁ କହିଲେ, "ହଜୁର୍, ଆମ ଜାତିର ଲୋକେ ଗୋଟାଏ ନିର୍ଦ୍ଦିଷ୍ଟ ଅଞ୍ଚଳରେ ରହନ୍ତି । ସେଠାରେ ମନ୍ଦିର ନାହିଁ । ଗୋଟାଏ ମନ୍ଦିର ଗଢ଼ି ଦିଅନ୍ତୁ ।"

ବ୍ରଜ



"ହେଉ ।" ରାଜା କହିଲେ ।

ପରଦିନ ଅନ୍ୟ ଜଣେ ପରାମର୍ଶଦାତା ଆସି କହିଲେ, "ମହାରାଜ, ଆମ ବଣିଆ ଜାତିର ଲୋକଙ୍କ ପାଇଁ ଗୋଟାଏ ମନ୍ଦିର ତୋଲା ହେଉ ।"

ରାଜା କିଛି କହିବା ପୂର୍ବରୁ ମନ୍ତ୍ରୀ କହିଲେ, "ମହାରାଜ ! ମନ୍ଦିର ତିଆରି କଲଭଳି ଏତେ ଅର୍ଥ ଆସିବ କୁଆଡୁ ? ପନ୍ଦରଜଣ ପରାମର୍ଶଦାତା ଯଦି ନିଜ ନିଜ ଲୋକଙ୍କୁ ଖୁସି କରିବା ନିମନ୍ତେ ପନ୍ଦରଟି ମନ୍ଦିର ଦାବୀ କରିବେ, ତେବେ ଆଗାମୀ କେତେ ବର୍ଷ ପାଇଁ ରାଜ୍ୟରେ ଆଉ କିଛି କାମ ହୋଇ ପାରିବ ନାହିଁ ।"

ଟଙ୍କା ବିଷୟ ପଡ଼ିବାରୁ ରାଜାଙ୍କୁ ନୀରବ ରହିବାକୁ ହେଲା । ସେ କହିଲେ, "ଆଚ୍ଛା, ଆମର ରାଜ ମନ୍ଦିରରେ ଲଗା ବେପାରୀମାନେ ସପ୍ତାହରେ ଦିନେ ଆସି ପୂଜା ଆରାଧନା କରନ୍ତୁ । ସେଦିନ ଆଉ କେହି ମନ୍ଦିରକୁ ଆସିବ ନାହିଁ । ବଣିଆମାନେ ବି ଆଉ ଦିନେ ତାଙ୍କ ନିଜ ପାଇଁ ଠିକ୍ କରନ୍ତୁ ।"

ତାହାହିଁ ହେଲା । କିନ୍ତୁ ଗୃହୁଁ ଗୃହିଁ ସାତ-ଦିନ ଯାକ ଭିନ୍ନ ଭିନ୍ନ ଗୋଷ୍ଠିର ଲୋକେ ମନ୍ଦିରକୁ ନିଜ ନିଜ ପାଇଁ ରଖିବା ପରେ ବି ଆହୁରି କେତେକ ଭିନ୍ନ ଭିନ୍ନ ଗୋଷ୍ଠିର ଉପଦେଷ୍ଟା ଥିଲେ--ଯେଉଁମାନଙ୍କ ପାଇଁ ସ୍ୱତନ୍ତ୍ର ଦିନମାନ ପ୍ରୟୋଜନ ହେଲା ।

"ସପ୍ତାହରେ ମାତ୍ର ସାତଦିନ ଥିବାରୁ ଏତେ଼ ଅସୁବିଧା । ଏଣିକି ଦଶଦିନରେ ସପ୍ତାହେ ହେବ ।" ରାଜା ରାୟ ଶୁଣାଇଲେ ।

"ପ୍ରଭୁ ! ସାତ ଦିନର ସାତ ନାମ ଅଛି । ଆଉ ଅଧିକା ତିନିଦିନର ନାମ କ'ଣ ହେବ ?" ମନ୍ତ୍ରୀ ପଚାରିଲେ ।

"ଗୋଟିଏ ଦିନ ସମ୍ରାଟଙ୍କ ନାମରେ, ଅନ୍ୟ ଏକ ଦିନ ମୋ ନାମରେ ଓ ତୃତୀୟ ଦିନଟି ତମ ନାମରେ ନାମିତ ହେଉ ।" ରାଜା କହିଲେ ।

ଜଣେ ଧନୀ ବେପାରୀ ସେ ଖବର ପାଇ ରାଜାଙ୍କୁ ଆସି ଏକଲକ୍ଷ ଟଙ୍କା ଭେଟି ଦେଇ କହିଲା, "ପ୍ରଭୁ ! ସପ୍ତାହକୁ ଦଶଦିନ ପରିବର୍ତ୍ତେ

ଏଗାରଦିନ ଜଡ଼ି ଦିଅନ୍ତୁ । ମୋ ନାମରେ ଏକାଦଶଦିନଟି ନାମିତ ହେଉ ।"

"ବେଶ୍! ବେଶ୍!" ରାଜା ସମ୍ମତି ଦେଲେ ।

ଏସବୁ ଘଟଣା ଯାଇ ସମ୍ରାଟ ରାଜ୍ୟବର୍ଦ୍ଧନଙ୍କ କାନରେ ପଡ଼ିଲା । ସେ ଆହୁରି ବି ଖବର ପାଇଲେ, ଆନନ୍ଦଚନ୍ଦ୍ରଙ୍କ ଯୋଗୁଁ ଜୟଗଡ଼ରେ ପ୍ରବଳ ବିଶୃଙ୍ଖଳା ଦେଖା ଦେଇଛି । ସେ ଆନନ୍ଦଚନ୍ଦ୍ରଙ୍କୁ ଡକାଇ କହିଲେ, "ଆନନ୍ଦ! ତମର ଜ୍ଞାନ ଗରିମାର ବହୁ ଖ୍ୟାତି ମୋ କାନରେ ପଡ଼ୁଛି । ତମେ ମୋର ଉପଦେଷ୍ଟା ହୁଅ ।"

"ସମ୍ରାଟ, ତା'ହେଲେ ତ ମୋତେ ଜୟଗଡ଼ ଛାଡ଼ି ଏଠି ଆସି ରହିବାକୁ ପଡ଼ିବ!" ଆନନ୍ଦଚନ୍ଦ୍ର ଖୁସି ହୋଇ କହିଲେ ।

"ତମେ କ'ଣ ମୋ ମଙ୍ଗଳ ପାଇଁ, ସାମ୍ରାଜ୍ୟର ହିତ ପାଇଁ ଏତିକ କରିବ ନାହିଁ?" ସମ୍ରାଟ ପଚାରିଲେ ।

"ନିଶ୍ଚୟ, ନିଶ୍ଚୟ! ଏହାଠୁଁ ବଳି ଗୌରବର କଥା କ'ଣ ହୋଇପାରେ?" ଆନନ୍ଦଚନ୍ଦ୍ର କହିଲେ ।

ସମ୍ରାଟଙ୍କ ପରାମର୍ଶ କ୍ରମେ ଆନନ୍ଦଚନ୍ଦ୍ରଙ୍କ ପୁଅ ଯୁବରାଜ ସୁଭଦ୍ରଙ୍କର ଅଭିଷେକ ହେଲା । ସୁଭଦ୍ର ଥିଲେ ଜଣେ ବୁଦ୍ଧିମାନ ଯୁବକ । ସମ୍ରାଟ ସୁଭଦ୍ରଙ୍କୁ ଗୋପନରେ କହିଲେ, "ଦେଖ! ଜୟଗଡ଼କୁ ତମ ବାପାଙ୍କ ଖାମ-ଖିଆଲରୁ ରକ୍ଷା କରିବା ପାଇଁ ତମକୁ ଏଡ଼େ ତରୁଣ ବୟସରୁ ରାଜ୍ୟ ଭାର ଦିଆଗଲା । ଏତିକ ବୁଝୁଛ ତ?"

"ହଁ ସମ୍ରାଟ ।" ସୁଭଦ୍ର କହିଲେ । ସେ କ୍ରମେ ସୁଶାସକ ଭାବରେ ପ୍ରତିଷ୍ଠା ଅର୍ଜନ କଲେ । ଆନନ୍ଦଚନ୍ଦ୍ର ମୃତ୍ୟୁ ପର୍ଯ୍ୟନ୍ତ ସମ୍ରାଟ ରାଜ୍ୟବର୍ଦ୍ଧନଙ୍କ ଦରବାରରେ ଉପଦେଷ୍ଟା ସାଜି ବସି ରହିଥାନ୍ତି । ତାଙ୍କ ଉପଦେଶର ଯେ କୌଣସି ମୂଲ୍ୟ ନଥାଏ, ସେକଥା ସେ ବୁଝୁ ନଥିଲେ ।





# ମନ୍ଦବୁଦ୍ଧି

ଗଣପତିଙ୍କର ଚାକର ବିନା କେବେ କାମ ଚଳେନାହିଁ। ଗ୍ରାମରେ ସେ ଧନୀଲୋକ, ଶରୀରଟି ସ୍ଥୂଳ, ମନଟି ଅଳସୁଆ। ହାତରୁ ଜିନିଷଟିଏ ପଡ଼ିଗଲେ ଉଠେଇ ନେବାକୁ ତାଙ୍କର ଆଉ ବଳ ନଥାଏ। ଚାକରଟିଏ ଆସି ସେଇଟି ହାତକୁ ଉଠେଇ ଦେଇଦେବ। ଏସବୁ ସତ୍ତ୍ୱେ ଗଣପତିଙ୍କର କ୍ରୋଧ ମଧ୍ୟ ଖୁବ୍ ଥିଲା। ଚାକର-ବାକରଙ୍କ ଉପରେ ସବୁବେଳେ ଖିଟ୍‌ଖିଟ୍ ହେବାରୁ ମାସେରୁ କେହି ବେଶି ତାଙ୍କ ଘରେ ଟିକି ପାରନ୍ତି ନାହିଁ। ପ୍ରଥମ ମାସର ଦରମାଟି ପାଇବା ମାତ୍ରେ ପଳାନ୍ତି। ବିରକ୍ତ ହୋଇ ଗଣପତି କହିଲେ ଯିଏ ଛମାସ ଏକାଦିକ୍ରମେ ରହିବ, ତା'ର ଛମାସର ଦରମା ଅଗ୍ରିମ ଦିଆଯିବ। କିନ୍ତୁ ତଥାପି ମଧ୍ୟ କେହି ଯୁଟିଲେ ନାହିଁ। ଏପରି ଅବସ୍ଥାରେ ହଠାତ୍ ଦିନେ ମନ୍ଦବୁଦ୍ଧି ନାମକ ବ୍ୟକ୍ତି ଚାକରୀ କରିବ ବୋଲି ଆସି ପହଞ୍ଚିଲା।

"ହଇରେ, ଚାକରର ପ୍ରଥମ କର୍ତ୍ତବ୍ୟ କ'ଣ?" ଗଣପତି ଗମ୍ଭୀର ହୋଇ ପଚାରିଲେ।

ମନ୍ଦବୁଦ୍ଧି କିଛି ସମୟ ଚିନ୍ତା କରି କହିଲା, "ଚାକରର ପ୍ରଥମ କର୍ତ୍ତବ୍ୟ ଚାକରୀ, ଆଜ୍ଞା, ଚାକରୀ!"

ଗଣପତି ହସିଲେ ଓ କହିଲେ, "ତୁ ବଡ଼ ନିର୍ବୋଧ ଦେଖୁଛି। ତୁ କ'ଣ କାମ କରିବୁ? ତେବେ ଗୋଟାଏ କଥା ମନେ ରଖ। ମୁଁ ଯାହା କରିବାକୁ କହିବି, ଅବିକଳ ତାହାହିଁ କରିବୁ। ତାହାହେଲେ ତୁ ଭୁଲ କରିବାର ସମ୍ଭାବନା ରହିବ ନାହିଁ। ସବୁ ଠିକ୍‌ଠାକ୍ ଚାଲିବ।"

"ହଉ ଆଜ୍ଞା। ଆପଣ ଯାହା କହିବେ ତାହାହିଁ କରିବି।" ମନ୍ଦବୁଦ୍ଧି ରାଜି ହେଲା।

ତା' ବିଷୟରେ ଭଲମନ୍ଦ କହିବାକୁ କେହି ନ ଥିଲେ। ଅକଲ ବୋଲି ଜିନିଷ ତା'

ସୁରେନ୍ଦ୍ର



ମୁଣ୍ଡରେ ନ ଥିଲା । କିନ୍ତୁ ଗଣପତିଙ୍କ ମୁହଁରୁ କଥା ବାହାରିବା ମାତ୍ରେ ମନ୍ଦବୁଦ୍ଧି ତତ୍‌କ୍ଷଣାତ୍ ତାକୁ ପାଳନ କରୁଥିଲା ଏତେଦିନ ପରେ ଗଣପତି ମନମୁତାବକ ଏକ ଚାକର ପାଇ-ଥିବାରୁ ଅତ୍ୟନ୍ତ ଖୁସି ।

ଦିନେ ଗଣପତି ସକାଳୁ ଶୋଇବାଘରୁ ଉଠି ବାହାରକୁ ଆସିଛନ୍ତି କିନ୍ତୁ ଦୀପଟି ଲିଭେଇ ନାହାନ୍ତି । ତେଣୁ ସେ ମନ୍ଦବୁଦ୍ଧିକୁ ଆଦେଶ ଦେଲେ ଦୀପ ଲିଭାଇ ଦେବାକୁ । ମନ୍ଦବୁଦ୍ଧି ଗଲା କିନ୍ତୁ ସେ ଲିଭାଇବା ପୂର୍ବରୁ ପବନରେ ଦୀପଟି ଆପେ ଲିଭିଗଲା । ସେ ତତ୍‌କ୍ଷଣାତ୍ ପଡ଼ିଶା ଘରକୁ ଯାଇ ଡିଆସିଲିଟିଏ ମାଗିଲା । ସେମାନେ ପଚାରିଲେ, "ତୁମ ଘରେ କ'ଣ ନାହିଁ ?"

"ଅଛି ତ ନିଶ୍ଚୟ । ତେବେ ଅନ୍ଧକାରରେ ମୁଁ ଦେଖି ପାରୁନାହିଁ ।" ମନ୍ଦବୁଦ୍ଧି କହିଲା ।

ପଡ଼ିଶା ଲୋକକୁ ଟିକିଏ କଥାଟା ଅସୁବିଧା ଲାଗିବାରୁ ସେ କହିଲା, "ଆଚ୍ଛା ଚାଲ ତୋ ସହିତ ଯିବି ।"

ଦୁହେଁ ଗଣପତିଙ୍କ ଘରେ ପଶିଲେ । ପଡ଼ୋଶୀ ଲୋକ ଦୀପ ଲଗାଇଦେବା ମାତ୍ରେ ମନ୍ଦବୁଦ୍ଧି ଫୁଙ୍କି ଲିଭାଇ ଦେଲା । ସେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ଯଦି ଲିଭାଇ ଦେବାର ଥିଲା ତେବେ ଦୀପ ଲଗାଇଲୁ କାହିଁକି ?"

"ମୋ ମାଲିକ ମୋତେ ଦୀପ ଲିଭାଇବାକୁ କହିଲେ, "ମୁଁ ଆସୁ ଆସୁ ଦୀପଟି ପବନରେ ଲିଭିଗଲା, ତେଣୁ ମୁଁ ଏପରି କଲି କାରଣ ମାଲିକଙ୍କ କଥା ମାନିବାକୁ ତ ପଡ଼ିବ । ଏବେ ଆପଣ ଘରକୁ ଯାଇ ପାରନ୍ତି ।" ମନ୍ଦବୁଦ୍ଧି କହିଲା ।

ଏସବୁ ଦେଖି ଓ ଶୁଣି ସେ ମନକୁ ମନ ବହୁତ ହସିଲେ । ତା'ପରେ ଗଣପତିଙ୍କ ପାଖକୁ ଯାଇ ସେ କହିଲେ, "ତମ ଚାକର ଆଦେଶ ପାଳନ କରି ଭଲ କାମ କରୁଛି ସତ ହେଲେ ମୁଣ୍ଡରେ କିଛି ନାହିଁ । ନିହାତି ଗୋଟାଏ ଗଜମୂର୍ଖ । କିଛି ବୁଝିପାରେ ନାହିଁ । ଆଜି ନ ହେଲେ ଦିନେ ନା ଦିନେ ତା' ଯୋଗୁ ତମେ ହଇରାଣରେ ପଡ଼ିବ ।" ଏକଥା କହି ସେ ପଞ୍ଚତନ୍ତ୍ରରୁ ଦୁଇଟି ଉଦାହରଣ ଦେଲେ ।

ଥରେ ଜଣେ ରାଜା ନିଜର ଭୃତ୍ୟ ମାଙ୍କଡ଼କୁ ପାଖରେ ବସାଇ ଶୋଇପଡ଼ିଥିଲେ ଓ ସେତେବେଳେ ଗୋଟାଏ ମାଛି ଆସି ତାଙ୍କ କପାଳରେ ବସିବାରୁ ମାଛିକୁ ମାରିବା ଉଦ୍ଦେଶ୍ୟରେ ମାଙ୍କଡ଼ କପରି ତରବାରିରେ ରାଜାଙ୍କ କପାଳକୁ ଆଘାତ କଲା, ଏ ଗପଟି ଗଣପତିଙ୍କୁ ବଡ଼ ଭାବିତ କଲା ।

କ୍ରମେ କ୍ରମେ ଗଣପତିଙ୍କ ମୁଣ୍ଡରେ ଚିନ୍ତା ପଶିଲା । କ'ଣ କରିବେ ? ଏଭଳି ଭଲ ନୌକରକୁ ଛାଡ଼ିଦେବାକୁ ତାଙ୍କର ଇଚ୍ଛା ନ ଥିଲା । ଶେଷରେ ସେ ଠିକ୍ କଲେ ଜଣେ ଶିକ୍ଷକ ଆସି ତାକୁ କିଛି ପାଠଶାଠ ଶିଖାଉ । ଶିକ୍ଷକ ଆସିଲେ ଓ ଯଥାମତ ପଢ଼ାଇଲେ । ଅଳ୍ପଦିନ ମଧ୍ୟରେ ଦେଖାଗଲା ଯେ ତା'ର ବୁଦ୍ଧିର କ୍ରମେ ବିକାଶ ହେଉଛି । ଗଣପତି ନିଜେ ତା'ର ପ୍ରମାଣ ପାଇଲେ । ତା'ପରେ ସେ ଶିକ୍ଷକଙ୍କ ଉପରେ ଖୁସି ହୋଇ ତାକୁ କିଛି ପୁରସ୍କାର ଦେଇ ବିଦାୟ କଲେ ।

ଆଗଭଳି ଆଜିକାଲି ମନ୍ଦବୁଦ୍ଧି ଗଣପତିଙ୍କର ଆଦେଶ ସବୁ ଅନ୍ଧଭାବରେ ପାଳନ କରୁନାହିଁ । ସବୁ କାମ ଭିତରେ ଭଲମନ୍ଦ ବିଚାର କରି କେବଳ ଭଲ କାମ କରୁଛି । ବେଳେ ବେଳେ ମାଳିକଙ୍କୁ ଉପଦେଶ ଦେବାକୁ ମଧ୍ୟ ଛାଡ଼େ ନାହିଁ । ଦିନେ ଗଣପତି ଭୀଷଣ ରାଗିଯାଇ କହିଲେ, "ତୁ ଛୋଟ ଛୋଟ କଥାରେ କିଛି କହିଲୁ ଠିକ୍ ଅଛି । କିନ୍ତୁ ବଡ଼ ବଡ଼ କଥାରେ ସବୁବେଳେ ମୁଁ ଯାହା କହୁଛି ତୋତେ ତାକୁ ପାଳନ କରିବାକୁ ହେବ ।"



"ଆପଣ ଏ କ'ଣ କହୁଛନ୍ତି? ଆପଣ ଭୁଲ୍ କରୁଥିବାର ଦେଖି ମୁଁ ବା କିପରି ଚୁପ୍ ରହିବି? ତା'ପରେ ଯାହା ବା କହୁଛି ସବୁ ଆପଣଙ୍କ ଭଲ ପାଇଁ କହୁଛି ତ!" ମନ୍ଦବୁଦ୍ଧି କହିଲା।

ଏକଥା ଶୁଣି ଗଣପତି ଗର୍ଜି ଉଠି କହିଲେ, "ମୁଁ ତତେ ଏବେ ଏହି ମୁହୂର୍ତ୍ତରେହିଁ କାମରୁ ବାହାର କରି ଦେଉଛି। ଚାଲିଯା ଏଠାରୁ।"

"ମୋତେ ତ ଏଠି କାମ କରିବାକୁ ଭଲ ଲାଗୁଛି। ମୁଁ କୁଆଡ଼େ ଯିବି?" ମନ୍ଦବୁଦ୍ଧି କହିଲା।

ତା'ପରେ ଦୁହେଁ ସରପଞ୍ଚଙ୍କ ପାଖକୁ ଗଲେ। ସରପଞ୍ଚ କହିଲେ, "ମନ୍ଦବୁଦ୍ଧି, ଗଣପତି ତ ତତେ ପାଠ ପଢ଼ାଇଲେ। ତୁ ତାଙ୍କ ପ୍ରତି କୃତଜ୍ଞ ହେବା ଉଚିତ।"

"ହଜୁର୍ ଏକଥା ସତ ଯେ ମୋର ମାଲିକ ଧନ ଖର୍ଚ୍ଚ କରି ମୋତେ ବିଦ୍ୟାବୁଦ୍ଧି ଓ ବିବେକ ଦେଇଛନ୍ତି। କିନ୍ତୁ ପୂର୍ବରୁ ସେ ମୋ କାର୍ଯ୍ୟରେ ସନ୍ତୁଷ୍ଟ ଥିଲେ। ଏବେ ମୁଁ ବୁଦ୍ଧିମାନ୍ ଓ ବିବେକଶୀଳ ହୋଇ ମୋର ଏଇଆ ଲାଭ ହେଲା ଯେ ମୋର ଚାକିରିଟି ଗଲା। ମୋତେ ଏବେ କିଏ ଚାକିରି ଦେବ?" ମନ୍ଦବୁଦ୍ଧି କହିଲା।

"ତୁ ଗଣପତିଙ୍କ କଥା ମାନିଲେ ଚାକିରି କାହିଁକି ଯା'ନ୍ତା?" ସରପଞ୍ଚ କହିଲେ।

"ହଜୁର୍, କେଉଁ ବୁଦ୍ଧିଥିବା ଲୋକ ତାଙ୍କର ସବୁ କଥା ମାନିବ? ଯଦି ସେ



ମୋତେ ଚାହାନ୍ତି ପୂର୍ବପରି ଅନ୍ଧଭାବରେ କାମ କରିବାକୁ, ତେବେ ମୋତେ ସେ ପୂର୍ବପରି ମୂର୍ଖ କରି ଦିଅନ୍ତୁ ।" ମନ୍ଦବୁଦ୍ଧି କହିଲା । ମନ୍ଦବୁଦ୍ଧିର ଏ ପ୍ରସ୍ତାବ ଗଣପତିଙ୍କ ମନକୁ ପାଇଲା । ତାଙ୍କ ମୁହଁ ଉଜ୍ଜ୍ୱଳ ଦିଶିଲା ।

"ଆଚ୍ଛା ମୁଁ ଶିକ୍ଷକଙ୍କୁ ଡାକି କହିବି ସେ ତତେ ପୁଣି ମୂର୍ଖ କରିଦେବେ ।" ଗଣପତି କହିଲେ ।

"ହଜୁର୍, ଦେଖୁଛନ୍ତି ତ? ଏପରି ଉଦ୍ଭଟ କଥା କି କେବେ ସମ୍ଭବ?" ଗଣପତି ସରପଞ୍ଚଙ୍କୁ କହିଲା ।

ସରପଞ୍ଚ ଗଣପତିଙ୍କୁ ବୁଝାଇଲେ, "ଦେଖ, ଏବେ ସେ ବିଦ୍ୟାବୁଦ୍ଧି ଆୟତ୍ତ କଲାପରେ କାମ କରିବା ସଙ୍ଗେ ସଙ୍ଗେ ଆପଣଙ୍କୁ ଭଲ ମନ୍ଦରେ ନିଷ୍ପତ୍ତି କହିବ । ଯଦି ଆପଣ ତାକୁ ରଖିବାକୁ ନ ଚାହାନ୍ତି ତେବେ ଆଉ କେଉଁଠାରେ ତା' ପାଇଁ ଚାକିରିଟିଏର ବନ୍ଦୋବସ୍ତ କରନ୍ତୁ ।"

ଏସବୁ ବିଚାର ଶୁଣି ଗଣପତିଙ୍କର ମୁଣ୍ଡ ଗୋଳମାଳ ହୋଇଗଲା । ସେ କିଂକର୍ତ୍ତବ୍ୟ-ବିମୂଢ଼ ହୋଇ ବସି ରହିଲେ । ସେତେବେଳେ ସରପଞ୍ଚ ହସି ହସି କହିଲେ, "ଗଣପତି ବ୍ୟସ୍ତ ହୁଅନାହିଁ । ତୁମ ଚାକର ସ୍ୱଭାବରେ ବିନୟୀ ଓ ବିଚାରବନ୍ତ । ମୁହିଁ ତାକୁ ତୁମ ପାଖକୁ ପଠାଇଥିଲି ଇଚ୍ଛାକରି ଓ ମୂର୍ଖପରି ଅଭିନୟ କରିବାକୁ କହିଥିଲି । ତୁମେ ଗ୍ରାମ ମଧ୍ୟରେ ସବୁଠାରୁ ଜଣାଶୁଣା ଓ ଧନୀ ଲୋକ । ତୁମର କ୍ରୋଧ ଛଡ଼ା ଆଉ ସବୁ ଗୁଣ ଖୁବ୍ ଭଲ । ସେଇଟାକୁ ଭଲ ଭାବରେ ତୁମକୁ ବୁଝେଇ ଦେବାକୁ ମୁଁ ଏପରି କରିଥିଲି ।"

"ଆଗରୁ କାହିଁକି କହିଲେ ନାହିଁ?" ଏକଥା କହି ଗଣପତି ମନ୍ଦବୁଦ୍ଧି ଆଡ଼କୁ ଅନାଇ କହିଲେ, "ତୁ କେମିତି ଏତେ ସୁନ୍ଦର ଅଭିନୟ କଲୁ? କିନ୍ତୁ ତୋ'ପରି ଚାକର ଓ ମୋ ପରି ମାଲିକ ଦୁହେଁ ଦୁହିଁଙ୍କୁ ପାଇବା ସୌଭାଗ୍ୟର ବିଷୟ । ଚାଲ୍, ଏବେ ଘରକୁ ।"





# ବିଷ୍ଣୁ ପୁରାଣ

ଭଗବାନ୍ ବିଷ୍ଣୁ ଜୟ ଓ ବିଜୟଙ୍କୁ କହିଲେ, "ମହାମୁନିମାନଙ୍କର ଅଭିଶାପ ମିଥ୍ୟା ହୋଇ ନ ପାରେ । ତମେ ଦୁହେଁ ଯଦି ମୋ ସହିତ ମିତ୍ରଭାବ ରଖି ଜନ୍ମନେବ ତେବେ ମୁକ୍ତି ପାଇବାକୁ ତୁମକୁ ଲାଗିବ ସାତଜନ୍ମ । ନାହିଁ ତ ଯଦି ମୋ ସହିତ ବୈରୀଭାବ ରଖି ଜନ୍ମନେବ ତେବେ ମାତ୍ର ତିନିଜନ୍ମ ପରେ ତୁମେ ଦୁହେଁ ମୁକ୍ତ ହୋଇ ପୁଣି ଏଇ ବୈକୁଣ୍ଠକୁ ଫେରି ଆସିବ । କୁହ କ'ଣ ଚାହଁ?"

ଏକଥା ଶୁଣି ଜୟ ବିଜୟ ତିନିଜନ୍ମ ପରେ ଫେରି ଆସିବା ପାଇଁ ଇଚ୍ଛା ପ୍ରକାଶ କଲେ । ଜୟ ବିଜୟଙ୍କର ଇଚ୍ଛାକୁ ମୁନିମାନେ ପ୍ରଶଂସା କରି ବିଷ୍ଣୁଙ୍କୁ କହିଲେ, "ଭଗବାନ୍, ଆମେ ଏବେ ଜାଣିଲୁ ରାଗଦ୍ୱେଷ ମଧ୍ୟ ଦେଇ ବି ଆପଣଙ୍କୁ ଉପଲବ୍ଧି କରାଯାଇ ପାରେ । ଆପଣଙ୍କ ଦ୍ୱାରପାଳ ଦୁହିଁଙ୍କର ଭୁଲ୍ ଦେଖି ଆମେମାନେ ଅଭିଶାପ ଦେଇ ଏବେ ପଶ୍ଚାତ୍ତାପ କରୁଛୁ । ଆମକୁ କ୍ଷମା କରନ୍ତୁ ।"

ତା'ପରେ ଜୟ ଓ ବିଜୟ କଶ୍ୟପ ପ୍ରଜାପତିଙ୍କର ପତ୍ନୀ ଦିତିଙ୍କ ଗର୍ଭରେ ହିରଣ୍ୟକଶିପୁ ଓ ହିରଣ୍ୟାକ୍ଷ ନାମରେ ଦୁଇ ଭାଇ ହୋଇ ଜନ୍ମ ହେଲେ । ଅଳ୍ପଦିନ ମଧ୍ୟରେ ଦୁଇଭାଇ ଖୁବ୍ ପରାକ୍ରମୀ ହୋଇ ଉଠିଲେ । ଘୋର ତପସ୍ୟା କରି ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରି ଦୁହେଁ ତାଙ୍କଠାରୁ ବର ପାଇ ବିଷ୍ଣୁଙ୍କ ପ୍ରତି ରାଗ ଓ ଦ୍ୱେଷଭାବ ଦେଖାଇବାକୁ ଲାଗିଲେ ।

କାଳକ୍ରମେ ହିରଣ୍ୟକଶିପୁ ରାକ୍ଷସମାନଙ୍କର ରାଜା ହୋଇ ସିଂହାସନରେ ବସିଲା ଓ ବିଷ୍ଣୁଙ୍କ

୫. ବରାହ ଅବତାର ଓ ନୃସିଂହ ଅବତାର



ସହିତ ସମ୍ମୁଖ ଯୁଦ୍ଧ କରିବାର ଇଚ୍ଛା ପ୍ରକାଶ କଲା । ବିଷ୍ଣୁଙ୍କ ମନରେ ଦ୍ୱେଷ ଓ ରାଗ ଉଦ୍ରେକ କରାଇବା ପାଇଁ ଦୁଇଭାଇ ପୃଥିବୀ ଉପରେ ବହୁତ ଅତ୍ୟାଚାର କରିବାକୁ ଲାଗିଲେ । ପୃଥିବୀକୁ ସେମାନେ ନେଇ ସମୁଦ୍ର ଗର୍ଭରେ ନିକ୍ଷେପ କଲେ ଓ ପୃଥିବୀ ରସାତଳ ମଧ୍ୟକୁ ବୁଡ଼ିଗଲା । ପୃଥିବୀ-ମାତା ନିଜକୁ ରକ୍ଷା କରିବା ପାଇଁ ଶ୍ରୀକୃଷ୍ଣଙ୍କୁ ପ୍ରାର୍ଥନା କଲେ । ବିଷ୍ଣୁ ପୃଥିବୀକୁ ଉଦ୍ଧାର କରିବା ପାଇଁ ବରାହ ଅବତାର ରୂପ ନେଲେ ।

ବ୍ରହ୍ମା ହୋମ କରିବା ସମୟରେ ଯଜ୍ଞକୁଣ୍ଡରୁ ଏକ ଶୁଭ ଜ୍ୟୋତିକଣା ଉଦ୍ଭୂତ ହେଲା । ତାହା କ୍ରମେ ବଢ଼ିବାକୁ ଲାଗିଲା ଓ ଶେଷରେ ଏକ ବରାହ ରୂପ ଧାରଣ କଲା । ସେହି ଯଜ୍ଞ ବରାହଙ୍କୁ ବିଷ୍ଣୁଙ୍କର ଅବତାର ବୋଲି ଜାଣି ବ୍ରହ୍ମା ଓ ଅନ୍ୟ ଦେବତାମାନେ ତାଙ୍କୁ ସ୍ତୁତି କଲେ । ବଢ଼ି ବଢ଼ି ସେ ବିରାଟ ରୂପ ଧାରଣ କଲେ । ତାଙ୍କର ଦିବ୍ୟ ଶରୀର ସାରା ଅନ୍ତରୀକ୍ଷ ବ୍ୟାପୀ ବିରାଜମାନ କଲା । ତାଙ୍କର ଆଖିରୁ ଅରୁଣ ବର୍ଣ୍ଣର ଜ୍ୟୋତି ନିର୍ଗତ ହେଉଥିଲା । ସେ ସାରା ବିଶ୍ୱକୁ କମ୍ପମାନ କରି ଏକ ଭୟଙ୍କର ହୁଂକାର କଲେ । ତାଙ୍କର ଥିଲା ବିରାଟ ଦୁଇ ଦନ୍ତ ଓ ନାସାର ଅଗ୍ରଭାଗରେ ଥିଲା ଭୟଙ୍କର ଏକ ଶୃଙ୍ଗ ।

ବରାହ ଅବତାର ତା'ପରେ ଚତୁର୍ଦ୍ଦିଗରେ ଧାବମାନ ହେଲେ । ତାଙ୍କର ପ୍ରତି ପଦ-କ୍ଷେପରେ ସାରା ବିଶ୍ୱ କମ୍ପି ଉଠୁଥିଲା । ପ୍ରଳୟକାଳୀନ ତୋଫାନ୍ ଓ ଭୂମିକମ୍ପ ହେବା ପରି ମନେ ହେଉଥିଲା । ସେହି ଯଜ୍ଞ ବରାହ ସମୁଦ୍ର ମଧ୍ୟରେ ରସାତଳ ମଧ୍ୟକୁ ବୁଡ଼ିଯାଇ ପୃଥିବୀକୁ ନିଜର ଦୁଇ ଦାନ୍ତ ଓ ସିଂଘ ଦ୍ୱାରା ଉପରକୁ ଉଠାଇଲେ ।

ସେହି ସମୟରେ ହିରଣ୍ୟାକ୍ଷ ବରୁଣଦେବଙ୍କୁ ଯୁଦ୍ଧ ପାଇଁ ଆହ୍ୱାନ କରୁଥାଏ । ତା'ର ଉତ୍ତରରେ ବରୁଣ କହିଲେ, "ତୁ ମୋ ସହିତ ଯୁଦ୍ଧ କରିବା ଆଉ ପ୍ରୟୋଜନ ନାହିଁ । ତୁ ତ ମହାନ୍ ବୀର । ତୁ ବରଂ ଯାଇ ପରମ-ଶକ୍ତିଶାଳୀ ଯଜ୍ଞବରାହଙ୍କ ସାଥିରେ ଯୁଦ୍ଧ କର ।"

ଏକଥା ଶୁଣି ହିରଣ୍ୟାକ୍ଷ ତଟଙ୍ଗେ ସଙ୍ଗେ ଯଜ୍ଞବରାହଙ୍କ ନିକଟକୁ ଯୁଦ୍ଧ କରିବା ପାଇଁ



ଗଲା । ସେ ବରାହରୂପୀ ବିଷ୍ଣୁଙ୍କ ସହିତ ବହୁତ ପରାକ୍ରମ ସହିତ ଲଢ଼ିବାକୁ ଲାଗିଲା । ଲଢ଼ିବା-ବେଳେ ବିଷ୍ଣୁଙ୍କୁ ଯୁଦ୍ଧର ନାନା କୌଶଳ ଦେଖାଉଥିଲା । ତା'ର ଯୁଦ୍ଧକୌଶଳକୁ ବିଷ୍ଣୁ ପ୍ରଶଂସା କରୁଥିଲେ ।

କ୍ରମେ ଦୁହିଁଙ୍କ ମଧ୍ୟରେ ଯୁଦ୍ଧ ଭୟଙ୍କର ରୂପ ଧାରଣ କଲା । ଅବଶେଷରେ ଶ୍ରୀବିଷ୍ଣୁ ହିରଣ୍ୟାକ୍ଷକୁ ବଧ କଲେ । ଆକାଶରୁ ଦେବତାମାନେ ପୁଷ୍ପବୃଷ୍ଟି କଲେ ଓ ଅନେକ ଭାବରେ ତାଙ୍କର ସ୍ତୁତି କରିବାକୁ ଲାଗିଲେ ।

ଯଜ୍ଞବରାହଙ୍କ ଦ୍ୱାରା ସାନଭାଇ ହିରଣ୍ୟାକ୍ଷର ମୃତ୍ୟୁ ସମ୍ବାଦ ଶୁଣି ବଡ଼ ଭାଇ ହିରଣ୍ୟକଶିପୁ ଅତ୍ୟନ୍ତ ଦୁଃଖିତ ହେଲା । ସେ ଏହାର ପ୍ରତିଶୋଧ ନେବାକୁ ଚାହିଁଲା ଓ ସେଥିପାଇଁ ଶକ୍ତିସଞ୍ଚୟ କରିବା ସକାଶେ ହିମାଳୟକୁ ତପସ୍ୟା କରିବାକୁ ଗଲା । ସେ ଯିବା ସମୟରେ ତା'ର ପତ୍ନୀ ଥାଏ ଗର୍ଭବତୀ ।

ହିରଣ୍ୟାକ୍ଷ ମରିଥାଏ । ହିରଣ୍ୟକଶିପୁ ରାଜ୍ୟରେ ନଥାଏ । ଏହି ସୁଯୋଗରେ ଇନ୍ଦ୍ର ତାଙ୍କର ଦେବତା ଓ ସୈନ୍ୟଦଳ ନେଇ ଆସି ଅସୁର ରାଜ୍ୟ ଆକ୍ରମଣ କରି ପ୍ରାୟ ଅଧିକାଂଶ ଅସୁରଙ୍କୁ ହତ୍ୟା କଲେ ଓ ଶେଷରେ ହିରଣ୍ୟ-କଶିପୁର ରାଣୀ ଲୀଳାବତୀକୁ ଆକାଶମାର୍ଗରେ ବଳପୂର୍ବକ ନେଇ ଯାଉଥିଲେ । ସେହି ସମୟରେ ଦେବର୍ଷି ନାରଦ ଇନ୍ଦ୍ରଙ୍କୁ ଭର୍ତ୍ସନା କରି କହିଲେ, "ଇନ୍ଦ୍ର, ତମେ ଏପରି ଅନ୍ୟାୟ କରନାହିଁ । ସେ ଗର୍ଭବତୀ । ତୁମେ ତାକୁ ବଧ କରନାହିଁ । ପୁଣି ହିରଣ୍ୟକଶିପୁ ବିଷ୍ଣୁଙ୍କ ସହିତ ଦ୍ୱେଷ ଭାବ ରଖି ତାଙ୍କୁ ସର୍ବଦା ସ୍ମରଣ କରିବା ବେଳେ ଏ ଗର୍ଭର ଉତ୍ପତ୍ତି ହୋଇଛି । ଏ ଗର୍ଭରେ ଏକ ମହାନ୍ ଭକ୍ତ ଅବସ୍ଥାନ କରୁଛି । ତୁମେ ତେଣୁ ତାଙ୍କୁ ମାରିବାକୁ ଚେଷ୍ଟା ନକରି ଚାଲିଯାଅ ।"

ଇନ୍ଦ୍ର ସେଇଠାରେହିଁ ଗର୍ଭବତୀ ରାଣୀଙ୍କୁ ଛାଡ଼ି ଚାଲିଗଲେ । ସେହିଦିନଠାରୁ ଲୀଳାବତୀ ରହିଲେ ନାରଦଙ୍କ ଆଶ୍ରମରେ ।

ପ୍ରତିଦିନ ଆଶ୍ରମରେ ନାରଦ ଶ୍ରୀବିଷ୍ଣୁଙ୍କର ସ୍ତୁତି କରୁଥା'ନ୍ତି ଓ ବିଷ୍ଣୁଙ୍କର ଗୁଣକୀର୍ତ୍ତନ କରୁଥା'ନ୍ତି । ସେତେବେଳେ ଲୀଳାବତୀଙ୍କ ଗର୍ଭ



ଭିତରେ ଥାଇ ଶିଶୁଟି ସବୁ ଶୁଣୁଥାଏ । ଲୀଳାବତୀଙ୍କର ଦିବ୍ୟ ପୁତ୍ରସନ୍ତାନଟିଏ ଜନ୍ମ ହେଲା ।

ହିରଣ୍ୟକଶିପୁ ଘୋର ତପସ୍ୟା କରି ବ୍ରହ୍ମାଙ୍କୁ ସନ୍ତୁଷ୍ଟ କଲା ଓ ଅମର ବର ମାଗିଲା । ବ୍ରହ୍ମା କହିଲେ ସେ ଅମର ବର ଦେଇ ପାରିବେ ନାହିଁ । ତେଣୁ ସେ କହିଲା, "ମୋତେ ଏପରି ବର ଦେବ ଯେ ମୋର ମୃତ୍ୟୁ, ପୃଥିବୀ ବା ଆକାଶରେ, ଦିନରେ ବା ରାତିରେ ଘରେ ବା ବାହାରେ, ହୋଇ ପାରିବ ନାହିଁ । କୌଣସି ପଶୁ, ମନୁଷ୍ୟ ଓ ଦେବୀ ମୋତେ ମାରି ପାରିବେ ନାହିଁ ।

ବ୍ରହ୍ମା 'ତଥାସ୍ତୁ' କହି ଅନ୍ତର୍ଦ୍ଧାନ ହେଲେ । ବ୍ରହ୍ମାଙ୍କ ବରରେ ବଳୀୟାନ୍ ହୋଇ ସେ ବିଜୟ ଗର୍ବରେ ଫେରୁଥାଏ । ରାସ୍ତାରେ ନାରଦଙ୍କଠାରୁ ସବୁ ଶୁଣି ତାଙ୍କ ଆଶ୍ରମକୁ ଯାଇ ସ୍ତ୍ରୀ ଓ ପୁତ୍ରଙ୍କୁ ନେଇ ନିଜ ରାଜ୍ୟ ଅଭିମୁଖେ ଗୃହିଲା । ପୁତ୍ରର ନାମ ରଖିଲା ପ୍ରହ୍ଲାଦ ।

ରାଜ୍ୟକୁ ଫେରି ଆସି ଦେଖିଲା ରାଜ୍ୟ ଇନ୍ଦ୍ରଙ୍କ ଦ୍ୱାରା ଛାରଖାର ହୋଇଛି । ମନରେ ଭୟଙ୍କର କ୍ରୋଧ ଜାତ ହେଲା । ସେ ତା'ର ସୈନ୍ୟ ସହିତ କରି ସ୍ୱର୍ଗ ଅଭିମୁଖେ ଧାବିତ ହେଲା । ସେଠାରେ ଇନ୍ଦ୍ରଙ୍କୁ ଇନ୍ଦ୍ରପଦରୁ ବହିଷ୍କାର କରି ନିଜେ ସିଂହାସନ ଦଖଲ କଲା । ଦେବତାମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରୁଥାଏ । ଶେଷରେ ଇନ୍ଦ୍ରଙ୍କ ସ୍ତ୍ରୀ ଶଚିଦେବୀଙ୍କୁ ଅପମାନ କରିବା ବେଳେ ରାଣୀ ଲୀଳାବତୀ ତାକୁ ସେଥିରୁ ନିବର୍ତ୍ତାଇଲେ । ଶେଷରେ ସେ ବିଷ୍ଣୁଙ୍କୁ ଖୋଜି ଲାଗିଲା । ଚାରିଆଡ଼େ ଖୋଜି ଖୋଜି ନ ପାଇ ଯାଇ ବୈକୁଣ୍ଠରେ ପହଞ୍ଚିଲା । ସେଠାରେ ମଧ୍ୟ ନ ପାଇବାରୁ ଭାବିଲା ବିଷ୍ଣୁ ତାକୁ ଭୟ କରି କୁଆଡ଼େ ଲୁଚି ଯାଇଛନ୍ତି । ତା'ପରେ ବିଷ୍ଣୁଙ୍କୁ ପାଇବାର କୌଣସି ଉପାୟ ନ ଦେଖି ସେ ପୁଣି ରାଜଧାନୀକୁ ଫେରି ଆସିଲା ।

ଏଣେ ପ୍ରହ୍ଲାଦର ବୟସ ବଢ଼ିବା ସଙ୍ଗେ ସଙ୍ଗେ ତା'ର ବିଷ୍ଣୁଭକ୍ତି ମଧ୍ୟ ବଢ଼ୁଥାଏ । ଏସବୁ ଦେଖି ହିରଣ୍ୟକଶିପୁ ଆଶ୍ଚର୍ଯ୍ୟ ହେଲା ଯେ ଏପରି ବଂଶଦ୍ରୋହୀ କପରି ତା'ର ବଂଶରେ ଜନ୍ମ ନେଲା । ପ୍ରହ୍ଲାଦର ବିଦ୍ୟାଶିକ୍ଷା ପାଇଁ



ହିରଣ୍ୟକଶିପୁ ତାକୁ ଗୁରୁପୁତ୍ର ଷଣ୍ଡ ଓ ମାର୍କଙ୍କ ହାତରେ ସମର୍ପଣ କଲା ।

ପ୍ରହ୍ଲାଦ ଗୁରୁକୁଳରେ ହରିନାମ ସହିତ ବିଦ୍ୟାଭ୍ୟାସ କରୁଥା'ନ୍ତି । ସମୟ ଥିଲେ ସେ ନିଜର ସହପାଠୀମାନଙ୍କୁ ମଧ୍ୟ ହରିନାମ ଶିଖାଉଥା'ନ୍ତି । ପ୍ରହ୍ଲାଦଙ୍କର ବିଦ୍ୟା ସମାପ୍ତି ପରେ ଗୁରୁପୁତ୍ରମାନେ ତାଙ୍କୁ ହିରଣ୍ୟକଶିପୁ ପାଖକୁ ନେଇଗଲେ । ବାଳକ ପୁତ୍ରକୁ ଅତି ସ୍ନେହରେ ନିଜ କୋଳରେ ବସାଇ ପିତା ପଚାରିଲେ, "ତୁ କ'ଣ ପାଠ ପଢ଼ିଛୁ ଟିକେ ମୋତେ ଶୁଣାଇଲୁ !"

ପିତାଙ୍କ କହିବା ଅନୁସାରେ ପ୍ରହ୍ଲାଦ ଛନ୍ଦଶାସ୍ତ୍ର ଏକ ସୁନ୍ଦର ପଦ୍ୟ ନିଜର ମଧୁର କଣ୍ଠରେ ଗାଇଲା ଯାହାର ଅର୍ଥ ଥିଲା, "ମୁଁ ମୋର ଗୁରୁଙ୍କଠାରୁ ସବୁ ବିଦ୍ୟା ଶିଖି ପାଇଛି । ସେହି ସବୁ ବିଦ୍ୟାମାନଙ୍କ ମଧ୍ୟରେ ଶ୍ରେଷ୍ଠ ବିଦ୍ୟା ହେଉଛି ହରିଭକ୍ତି । ବିଷ୍ଣୁଙ୍କୁ ସ୍ମରଣ କରିବା ଦ୍ୱାରା ଜନ୍ମ ସାର୍ଥକ ହୋଇଯାଏ ।"

ପ୍ରହ୍ଲାଦ ମୁହଁରୁ ଏ କଥା ଶୁଣି ହିରଣ୍ୟକଶିପୁର ମନ କ୍ରୋଧରେ ଜଳିଗଲା । ସେ ସଙ୍ଗେ ସଙ୍ଗେ ପ୍ରହ୍ଲାଦକୁ ନିଜ କୋଳରୁ ଉଠାଇ ତଳେ କଚାଡ଼ି ଦେଲା ଓ ଗୁରୁଜୀ ଓ ତାଙ୍କ ପୁତ୍ର ଦୁହିଁଙ୍କୁ ଡାକି ଧମକ ଦେଇ ପଚାରିଲା, "ପୁଅକୁ ଏଇ ଶିକ୍ଷା ଦେଇଛ ?"

ଷଣ୍ଡ ଓ ମାର୍କ ଦୁହେଁ ଥରି ଥରି କହିଲେ, "ରାଜନ୍, ଏଥିରେ ଆମର କୌଣସି ଦୋଷ ନାହିଁ । ଆପଣ କୃପାକରି ଆମ ଉପରେ ରାଗନ୍ତୁ ନାହିଁ ।" ତା'ପରେ ସେମାନେ ବର୍ଣ୍ଣନା କଲେ ଆରମ୍ଭରୁ ହିଁ ପ୍ରହ୍ଲାଦର ହରିଭକ୍ତି ଥିଲା ଓ ସେମାନେ ଯେତେ ଚେଷ୍ଟା କଲେ ମଧ୍ୟ ତାକୁ ସେଥିରୁ ନିବର୍ତ୍ତାଇ ପାରି ନଥିଲେ ।

ହିରଣ୍ୟକଶିପୁ ନିଜ ପୁତ୍ରକୁ ବୁଝାଇଲା, "ଦେଖ ତୁ ଯାହାଙ୍କର ଗୁଣଗାନ କରୁଛୁ ସେହି ତୋର କାକାକୁ ବଧ କରିଛନ୍ତି । ସେ ଆମର ରାକ୍ଷସ କୁଳର ପରମ ଶତ୍ରୁ । ବିଷ୍ଣୁଙ୍କୁ ସ୍ମରଣ କରିବା ଅର୍ଥ ଆମ ବଂଶକୁ ଅପମାନ କରିବା । ଏହା ଅକ୍ଷମଣୀୟ ଅପରାଧ ।"

ପ୍ରହ୍ଲାଦ ଶାନ୍ତ ସ୍ୱରରେ କହିଲେ, "ବାବା ଆପଣ ଦାନବମାନଙ୍କର ରାଜା । ମୋତେ



ଅଭିଶାପ ଦେବାରେ ଆପଣଙ୍କର ସଙ୍କୋଚ କରିବାର କିଛି ନାହିଁ । ଆପଣଙ୍କର ଯାହା ଇଚ୍ଛା ତା' କରନ୍ତୁ, କିନ୍ତୁ ମୁଁ ନିରୁପାୟ । ଲୁହା ଯେପରି ଚୁମ୍ବକ ଦ୍ୱାରା ଟାଣି ହୋଇଯାଏ ଠିକ୍ ସେହିପରି ବିଷ୍ଣୁଙ୍କ ଆଡ଼କୁ ଦିନକୁଦିନ ମୁଁ ଅଧିକ ଜୋରରେ ଆକର୍ଷିତ ହେଉଛି । ଭ୍ରମର ଯେପରି ପଦ୍ମକୁ ଭୁଲିପାରେ ନାହିଁ । ମୁଁ ସେହିପରି ବିଷ୍ଣୁଙ୍କୁ ଭୁଲି ପାରିବି ନାହିଁ ।"

ଛୋଟ ବାଳକ ମୁଖରୁ ଏପରି କଥା ଶୁଣି ସେ କ୍ରୋଧରେ କମ୍ପି ଉଠିଲା ଓ ଗର୍ଜି ଗର୍ଜି କହିଲା, "ତେବେ ତ ତୋର ମୃତ୍ୟୁ ସୁନିଶ୍ଚିତ ।" ଏହା କହି ତାକୁ ଏକ କାରାଗାର ମଧ୍ୟରେ ବନ୍ଦୀ କରି ରଖିଲା । କିଛି ଖାଇବାକୁ ଦିଏ ନାହିଁ । ଏସବୁ ଦେଖି ପ୍ରହ୍ଲାଦର ମା' ଲୀଳାବତୀ ଦୁଃଖରେ ଭାଙ୍ଗି ପଡ଼ୁଥା'ନ୍ତି ।

କିଛିଦିନ ପରେ ଲୀଳାବତୀଙ୍କ ଦୁଃଖ ଦେଖି ହିରଣ୍ୟକଶିପୁ ପୁଅକୁ କାରାଗାର ମଧ୍ୟରୁ ମୁକ୍ତ କରିଦେଲା । ହରିଧ୍ୟାନରେ ତନ୍ମୟ ଥିବା ପୁଅ ପ୍ରହ୍ଲାଦର ଚେହେରା ଦେଖି ସେ ଚମକି ପଡ଼ିଲା । ଅନ୍ନଜଳ ବିନା ମରିଯିବା ପରିବର୍ତ୍ତେ ପ୍ରହ୍ଲାଦର ଶରୀର ଅଧିକ ସୁନ୍ଦର ଦେଖାଯାଉଛି । ଏକଥା ଦେଖି ସେ ଆହୁରି ରାଗିଗଲା ଓ ପ୍ରହ୍ଲାଦକୁ ନେଇ ହାତୀର ପାଦତଳେ ପକାଇ ଦେଲା । ମାହୁନ୍ତକୁ ଆଦେଶ ଦେଲା ହାତୀକୁ ପ୍ରହ୍ଲାଦ ଉପରେ ଚଲାଇ ନେବାକୁ । ହାତୀ କିନ୍ତୁ ପ୍ରହ୍ଲାଦକୁ ଦେଖି ସିଂହକୁ ଦେଖି ଭୟ ପାଇବା ପରି ଦୌଡ଼ି ପଳାଇଲା ।

ତା'ପରେ ଏକ ବିଷଧର ନାଗସାପକୁ ପ୍ରହ୍ଲାଦ ଉପରେ ପକାଇ ଦିଆଗଲା । ସାପ ଦଂଶନ କରିବା ପରିବର୍ତ୍ତେ ଫଣା ଟେକି ଧୀରେ ଧୀରେ ହଲି ହଲି ଗୂର୍ଣ୍ଣିଗଲା ।

ତା'ପରେ ହିରଣ୍ୟକଶିପୁର ଆଦେଶରେ କେତେଜଣ ଲୋକ ପ୍ରହ୍ଲାଦକୁ ତୀଖ ପାହାଡ଼ ଉପରକୁ ନେଇ ସେଇଠାରୁ ତଳକୁ ଫୋପାଡ଼ି ଦେଲେ, ପୁଣି ସମୁଦ୍ରରେ ବୁଡ଼ାଇ ଦେଲେ ଓ ଶେଷରେ ବିଷ ଖୁଆଇ ଦେଲେ । ତଥାପି ପ୍ରହ୍ଲାଦକୁ ଜୀବିତ ଦେଖି ତା'ର ପିତା ପଚାରିଲେ, "ଏତେ ଉପାୟରେ ତୋର ମୃତ୍ୟୁ ହେଉନାହିଁ, ଏଥିରେ କି ରହସ୍ୟ ଅଛି ?"

ପ୍ରହ୍ଲାଦ ହସି ହସି ଉତ୍ତର ଦେଲା, "ଏଥିରେ କୌଣସି ରହସ୍ୟ ନାହିଁ । ପଥର, ଅଗ୍ନି, ହାତୀ, ସମୁଦ୍ର, ସାପ, ବିଷ, ଆପଣ, ମୁଁ ସମସ୍ତଙ୍କ ମଧ୍ୟରେ ବିଷ୍ଣୁ ଅଛନ୍ତି । ସେ ସତ୍ୟ ଆପଣ ଉପଲବ୍ଧି କରି ନାହାନ୍ତି, ମୁଁ କିନ୍ତୁ କରିଛି । ମୋର ମୃତ୍ୟୁ ବା ଜୀବିତ ରହିବା ତାଙ୍କରି ଲୀଳାର ମାହାତ୍ମ୍ୟ ।"

ପ୍ରହ୍ଲାଦର ଉତ୍ତରରେ ହିରଣ୍ୟକଶିପୁ ଆତୁର ରାଗିଗଲା ଓ ପ୍ରହ୍ଲାଦର ହାତ ଧରି ଟାଣି ଟାଣି ସଭାଭବନକୁ ନେଇଗଲା । ଅନ୍ୟ ଏକ ହାତରେ ପ୍ରଚଣ୍ଡ ଗଦା । ଏ ଦୃଶ୍ୟ ଦେଖି ଲୀଳାବତୀ ବେହୋସ ହୋଇଗଲେ । ସବୁ ରାକ୍ଷସ ସେନାପତିମାନେ କାଠପିତୁଳା ପରି ଠିଆ ହୋଇ ରହିଥା'ନ୍ତି । ସଭାମଣ୍ଡପର ଆଗପଟକୁ ଲୌହନିର୍ମିତ ଏକ ବିଜୟସ୍ତମ୍ଭ ଥିଲା । ସେହି ସ୍ତମ୍ଭକୁ ଦେଖାଇ ହିରଣ୍ୟକଶିପୁ ପ୍ରହ୍ଲାଦକୁ ପଚାରିଲା, "ଆରେ କୁଳଦ୍ରୋହୀ, ଏହା ହେଉଛି ମୋର ବିଜୟସ୍ତମ୍ଭ । ମୋ ସାନଭାଇର ହତ୍ୟାକାରୀ ବିଷ୍ଣୁକୁ ବଧ କରି ମୁଁ ପ୍ରତିଶୋଧ ନେବି । କ'ଣ ତୋ ବିଷ୍ଣୁ ଏଇ ସ୍ତମ୍ଭ ଭିତରେ ଅଛି ?"

"ଆପଣଙ୍କର ସନ୍ଦେହ ହେଉଛି କାହିଁକି ? ସର୍ବତ୍ର ବିଦ୍ୟମାନ ବିଷ୍ଣୁ ଏଇ ସ୍ତମ୍ଭରେ ମଧ୍ୟ ଅଛନ୍ତି ।" ପ୍ରହ୍ଲାଦ କହିଲା ।

ହିରଣ୍ୟକଶିପୁ କ୍ରୋଧରେ ଲାଲ୍ ହୋଇ ଉଠି ହଜାର ହଜାର ରାକ୍ଷସଙ୍କ ସାମନାରେ ନିଜ ଗଦା ଦ୍ୱାରା ସେଇ ସ୍ତମ୍ଭକୁ ଆଘାତ କଲା । ପ୍ରଳୟ ଧ୍ୱନି ସହିତ ଆକାଶ ଓ ପୃଥିବୀ କମ୍ପି ଉଠିଲା । ଧୂଆଁର ବାଦଲ ଚାରିଆଡ଼େ ବ୍ୟାପିଗଲା । ସ୍ତମ୍ଭଟି ଦୁଇଖଣ୍ଡ ହୋଇ ଫାଟିଗଲା ! ତହିଁ ଭିତରୁ ବାହାରି ଆସିଲେ ନୃସିଂହ-ରୂପଧାରୀ ସ୍ୱୟଂ ବିଷ୍ଣୁ । ସିଂହପରି ମୁଣ୍ଡ, ଦେହ ମନୁଷ୍ୟପରି । ହାତରେ ବିରାଟ ନଖ ସବୁ । ନରସିଂହ ହିରଣ୍ୟକଶିପୁକୁ ଦେଖି ଭୟଙ୍କର ରାବରେ ଗର୍ଜ୍ଜନ କରି ଉଠିଲେ । ତାଙ୍କ ପଛରେ ବିରାଟ ସୁଦର୍ଶନ ଚକ୍ର ଘୂରୁଥିଲା ।





# ଚତୁର ଚୋର

ରୁମାନିଆର ରାଜଧାନୀରେ ଗୋଟାଏ ଓସ୍ତାଦ ଚୋର ରହୁଥିଲା । ଦିନେ ଗାଁରୁ ପ୍ରଥମ କରି ସହରକୁ ଯାଇଥିବା ଗୋଟାଏ ଚୋର ସାଙ୍ଗରେ ତା'ର ଭେଟ ହେଲା । ସହରର ଚୋର ନିଜର ଅଭିଜ୍ଞତାରୁ ନବାଗତର ହାବଭାବ ଦେଖି ସହଜରେ ଠଉରାଇ ନେଲା ଯେ ଲୋକଟା ଗାଉଁଲି ହେଲେ ବି ନିଜ କାମରେ କୌଶଳୀ ।

"ତୋର ଚତୁରତା ପରୀକ୍ଷା କରି ଦେଖିବା । ଯା, ଏ ଗଛ ଉପରେ ଯେଉଁ କାଉ ବସି ଅଛି, ସେଥିରୁ କାଉକୁ ନ ଜଣାଇ ଅଣ୍ଡା ଚୋରାଇ ଆଣିଲୁ !" ସହର ଚୋର କହିଲା ।

ଗାଉଁଲି ଚୋର ଗଛ ଉପରକୁ ଉଠିଗଲା ଓ ସତକୁ ସତ ଏପରି କୌଶଳରେ ଅଣ୍ଡା ଉଠାଇ ଆଣି ନିଜ ପକେଟରେ ପୂରାଇଲା ଯେ କାଉ କିଛି ଜାଣି ପାରିଲା ନାହିଁ ।

କିନ୍ତୁ ସେ ତଳେ ଆସି ପହଞ୍ଚିବା ବେଳକୁ ଦେଖେ ତ ତା' ପକେଟରେ ଆଉ ଅଣ୍ଡା ନାହିଁ । କେତେବେଳେ ଗଛ ଉପରକୁ ଉଠି-ଯାଇ ମଝିରେ କେଉଁଠି ଛପି ରହି ସହର ଚୋର ତା' ପକେଟରୁ ଅଣ୍ଡାତକ ଚୋରାଇ ନେଇଛି, ସେକଥା ସେ ବୁଝିପାରି ନାହିଁ । ସହର ଚୋର ଗାଉଁଲି ଚୋର ଗଛକୁ ଉଠିବା ପରେ ଉଠିଛି ଓ ସେ ତଳକୁ ଆସିବା ପୂର୍ବରୁ ନିଜେ ଓହ୍ଲାଇ ପଡ଼ିଛି ।

ଗାଉଁଲି ଚୋର ଆଶ୍ଚର୍ଯ୍ୟ ହେବାର ଦେଖି ସହର ଚୋର କହିଲା, "ଆରେ ଭାଇ, ତୁ ବେଶ୍ ପାରଙ୍ଗମ । ତୁ ସବୁ କଳା କୌଶଳ ଅଳ୍ପଦିନ ଭିତରେ ଶିଖି ଯିବୁ; ସନ୍ଦେହ ନାହିଁ ।



ତୋତେ ସବୁ ବିଦ୍ୟା ଶିଖାଇ ଦେଇ ମୁଁ ଚୋରି କାମରୁ ଅବସର ନେବି ।"

ଦୁହେଁ ରାତିରେ ରାଜନଅର ଆଡ଼େ ଗଲେ । ସହର ଚୋର ପାଚେରି ଉପରକୁ ଯାଇ ଯେଉଁଠି ରାଜାଙ୍କର ଧନାଗାର, ତାହା ନିରୂପଣ କରି ଗାଉଁଲି ଚୋରକୁ ଗୋଟାଏ ଛୋଟ ଝରକା ଭିତରଦେଇ ଦଉଡ଼ିରେ ବାନ୍ଧି ତଳକୁ ଓହ୍ଲାଇ ଦେଲା ।

ଗାଉଁଲି ଚୋର ଯାଇ ଗୋଟାଏ ଘରୁ ଦୁଇ ହଜାର ସରିକି ସୁନା ମୋହର ବାହାର କରି ଆଣି ପୁଣି ଦଉଡ଼ି ସାହାଯ୍ୟରେ ଉପରକୁ ଉଠି ଆସିଲା । ଦୁହେଁ ଚାଲିଗଲେ ।

ପରଦିନ ରାଜା ଧନାଗାରକୁ ଆସି ଅଭ୍ୟାସ ମୁତାବକ ଘର ଭିତରକୁ ଚାହିଁଲେ । ମୋହର କମିଯାଇଥିବାର ବୁଝିପାରି ସେ ଜଗୁଆଳକୁ ପଚାରିଲେ, "ଧନାଗାର ଭିତରକୁ କିଏ ଆସିଥିଲା ?"

"ପ୍ରଭୁ ! କେହି ଆସି ନାହିଁ ।" ଜଗୁଆଳ କହିଲା ।

ରାଜା ଘର ଭିତରେ ଭଲ ଭାବରେ ଲକ୍ଷ୍ୟ କରି ଦେଖିଲେ, କାହିଁ କେଉଁଠି ଗାତ ଖୋଳା ହୋଇନାହିଁ । ଚୋର ପଶିଲା କିପରି ?

ସେ ସିଧା କାରାଗାରକୁ ଯାଇ ଗୋଟିଏ ପୁରୁଣା ବୁଢ଼ା ଚୋରକୁ ସବୁ କହି ପଚାରିଲେ, "ଚୋର ଧନାଗାରରେ ସିନ୍ଧି ନକରି ପଶିଲା କିମିତି କହିଲ ?"

"ପ୍ରଭୁ ! କେଉଁଠାରେ ହେଲେ ପ୍ରବେଶ ପଥ ରହିଛି । ଆପଣ ଘର ଭିତରେ ଧୂଆଁ ଦେଇ ବାହାର ପଟେ ଲକ୍ଷ୍ୟ କରି ଦେଖନ୍ତୁ— ଧୂଆଁ କେଉଁ ବାଟରେ ବାହାରି ଯାଉଛି ।" ପୁରୁଣା ଚୋର କହିଲା ।

ରାଜା ତାହାହିଁ କଲେ । ଛାତ ଓ କାନ୍ଥର ଗୋଟାଏ ଅଦୃଶ୍ୟ ସଂଯୋଗ ସ୍ଥଳୀରେ ଥିବା ଝରକା ଦେଇ ଧୂଆଁ ବାହାରି ଯାଉଥିବାର ଦେଖି ସେ ଚୋର କେଉଁ ବାଟେ ପଶିଥିଲା ତାହା ବୁଝି ପାରିଲେ ।



ସେକଥା ସୂଚନା ଚୋରକୁ କହିବାରୁ ସେ କହିଲା, "ହୁମ୍ ! ଯେତେବେଳେ କଞ୍ଚା ସୁନା ମୋହର ଗଦାର ସନ୍ଧାନ ସେ ଚୋରକୁ ମିଳି ଯାଇଛି, ସେ ଲୋଭ ସମ୍ଭାଳି ନପାରି ପୁଣି ଆସିବ । ଆପଣ ଠିକ୍ ସେ ଝରକା ତଳେ ଗୋଟାଏ ଗାତରେ ଅଠା ପୂରାଇ ରଖିଦିଅନ୍ତୁ । ଗାତର ରଙ୍ଗ ଏମିତି ହୋଇଥିବ ଯେପରି ଅନ୍ଧାରରେ ତାହା ଦେଖାଯିବ ନାହିଁ ।"

ରାଜା ସେହି ବ୍ୟବସ୍ଥା କଲେ । ସତକୁ ସତ ସୁନା ମୋହର ଲୋଭରେ ସେ ଦୁଇ ଚୋର ପୁଣି ସେ ଦିନ ରାତିରେ ଆସି ସେଠି ପହଞ୍ଚିଗଲେ । ଚୋର ଜଣାପଡ଼ିବା ପୂର୍ବରୁ ଯେତେ ସମ୍ଭବ ମୋହର ଚୋରାଇ ନେବା ଥିଲା ସେମାନଙ୍କ ଉଦ୍ଦେଶ୍ୟ ।

ପୂର୍ବରାତି ଭଳି ସହର ଚୋର ଉପରେ ରହି ଦଉଡ଼ି ବାନ୍ଧି ଗାଉଁଲି ଚୋରକୁ ତଳକୁ ଓହ୍ଲାଇ ଦେଲା । ସେ ଯାଇ ସିଧା ଅଠାଗାତ ଭିତରେ ପଡ଼ିଲା ଓ ନିଜ ବିପଦ ବୁଝିପାରି ଉପରେ ଥିବା ଚୋରକୁ କହିଲା, "ଭାଇ, ମୁକୁଳିବାର ଉପାୟ ନାହିଁ । ମୁଁ ଜୀଅନ୍ତା ଧରା ପଡ଼ିବାକୁ ଚାହେଁନା । ମୋତେ ବିକଏ ବିଷ ଦିଅ ।"

ସହର ଚୋର ଦଉଡ଼ି ସାହାଯ୍ୟରେ ତା' ହାତ ପାଆନ୍ତା ଯାଏ ଆସି କହିଲା, "ଶୁଣ, ତୁ ମରିବା ଦରକାର ନାହିଁ । ମୋଠି ଗୋଟାଏ ଶିକଡ଼ ଅଛି । ତାକୁ ଚୋବାଇ ଦେଲେ ଜଣେ ଠିକ୍ ମୃତ ଭଳି ଜଣାଯିବ । ସେମାନେ ତୋତେ ମୃତ ଭାବି କିଛି ଦଣ୍ଡ ଦେବେ ନାହିଁ । ଆଗାମୀ କାଲି ମୁଁ ତୋତେ ନେଇଯିବାର ବ୍ୟବସ୍ଥା କରିବି ।"

ଶିକଡ଼ ଖୁଆଇଦେଇ ସହର ଚୋର ଚାଲିଗଲା ।

ସକାଳେ ରାଜା ଆସି ଅଠା ଗାତ ଭିତରେ ଚୋର ଧରା ପଡ଼ିଥିବାର ଦେଖି ଖୁସି ହୋଇଗଲେ । କିନ୍ତୁ ପାଖକୁ ଆସି ତାଙ୍କର ଧାରଣା ହେଲା ଚୋର ମରିଯାଇଛି ।



ରାଜା ଯାଇ କାରାଗାରରେ ଥିବା ପୁରୁଣା ଚୋରକୁ ସେକଥା କହିବାରୁ ସେ କହିଲା, "ମହାରାଜ, ତେବେ ସେ ଚୋରର ଆଉ ଜଣେ ସହଯୋଗୀ ଅଛି ।"

"କେମିତି ଜାଣିଲ ?" ରାଜା ପଚାରିଲେ ।

"ଅଠାରେ ପଡ଼ି ତ କେହି ମରିଯାଏ ନାହିଁ ! ତାକୁ ତା' ସହଯୋଗୀ ଆସି ବିଷ ଦେଇ ମାରିଛି । ଆପଣ ତା ଶବକୁ ନଅର ବାହାରେ ଥୋଇ ଦିଅନ୍ତୁ । ଅଳ୍ପ ଦୂରରେ ପ୍ରହରୀ ବସାଇ ଦିଅନ୍ତୁ । ଯିଏ ସେ ଶବକୁ ନେଇ ଯିବାକୁ ଚେଷ୍ଟା କରିବ, ତାକୁ ସେମାନେ ଧରିବେ ।" ପୁରୁଣା ଚୋର କହିଲା ।

ରାଜା ତାହାହିଁ କଲେ ।

ରାତିରେ ସହର ଚୋର ବୁଢ଼ାବେଶ ହୋଇ ଗୋଟାଏ ଘୋଡ଼ାଗାଡ଼ି ଚଳାଇ ସେଯାଏ ଆସି କୌଶଳ କ୍ରମେ ଗାଡ଼ି ଟିକିଏ ଓଲଟାଇଦେଲା ଓ କହିଲା, "ଆରେ ଭାଇ, କିଏ ଅଛ, ମୋ ଗାଡ଼ି ସିଧା କରିବା ପାଇଁ ମୋତେ ସାହାଯ୍ୟ କର । ନହେଲେ ଚାରିଗୋଟି ଯାକ ମଦ ବୋତଲ ଖାଲି ହୋଇଯିବାକୁ ବସିଲାଣି ।"

ପ୍ରହରୀମାନେ କହିଲେ, "ଆମକୁ ଯଦି ଗୋଟାଏ ବୋତଲ ପିଇବାକୁ ଦେବ, ତେବେ ଆମେ ସାହାଯ୍ୟ କରିବୁ ।"

"ଜରୁର୍ ଜରୁର୍ !" କହି ସହର ଚୋର ସେମାନଙ୍କୁ ମଦ ପରଶିଲା । ସେ ମଦରେ ମିଶି ରହିଥିଲା ନିଦ ଔଷଧ ।

ଗାଁ ଚୋର ଆଡ଼କୁ ଦୃଷ୍ଟି ଦେଇ ସହର ଚୋର ପଚାରିଲା, "ସିଏ କିଏ ସେଠି ?"

"ସିଏ ଗୋଟାଏ ଚୋର ।" ପ୍ରହରୀମାନେ କହିଲେ ।

"ତେବେ ତ ସେ ମୋ ଘୋଡ଼ା ଚୋରାଇ ନେଇଯିବ ।" ସହର ଚୋର ଆତଙ୍କ ଦେଖାଇ କହିଲା ।

ପ୍ରହରୀମାନେ ହସିଲେ ଓ କହିଲେ, "ଆରେ ଭାଇ, ସେଇଟା ମରିଯାଇଛି !"

"ସେଇଠୁ କଣ ହେଲା ? ତମେ ଦେଖିବ, ସେ ମୋ ଘୋଡ଼ା ଠିକ୍ ନେଇ-ଯିବ !" କହିଲା ବୁଢ଼ାବେଶୀ ସହର ଚୋର ।

ପ୍ରହରୀମାନେ ହସି ହସି ଢୁଳେଇ ପଡ଼ିଲେ । ସହର ଚୋର ସଙ୍ଗେ ସଙ୍ଗେ ଗାଁ ଚୋର ପାଖକୁ ଯାଇ ତା' ପାଟିରେ ଅନ୍ୟ ଗୋଟାଏ ଶିକଡ଼ ପୂରାଇ ଦେଲା ଓ ଔଷଧ ଶୁଙ୍ଘାଇଦେଲା । ସେ ଚେତା ଫେରି ପାଇଲା ।

ସହର ଚୋର ତାକୁ କହିଲା, "ଡେରି କରନା । ମୋ ଘୋଡ଼ା ଧରି ପଳାଇ ଯା ।"

ଗାଉଁଲି ଚୋର ତାହାହିଁ କଲା । ସହର ଚୋର ଯାଇ ପ୍ରହରୀମାନଙ୍କୁ ହଲାଇ ନିଦରୁ ଉଠାଇ କହିଲା, "ମୁଁ କହୁଥିଲିଟି, ସେ ଚୋର ମୋ ଘୋଡ଼ା ନେଇ ପଳାଇବ । ତମେମାନେ ମନା କଲ ବୋଲି ମୁଁ ସେଆଡ଼େ ଦୃଷ୍ଟି ଦେଲି ନାହିଁ । ସକାଳେ ରାଜାଙ୍କ ପାଖରେ ତମମାନଙ୍କ ବିରୁଦ୍ଧରେ ନାଲିଶ କରିବି ।"

ପ୍ରହରୀମାନେ ତାକୁ ନେହୁରା ହୋଇ ସେପରି କରିବାକୁ ମନାକଲେ ଓ ଶହେଟି ମୋହର ଘୋଡ଼ା ବାବଦରେ ଦେଲେ ।

ତେବେ ଶବ କପରି ଜୀବନ ଫେରି ପାଇ ତାଜା ହୋଇ ପୁଣି ଜଣକ ଘୋଡ଼ା ଧରି ପଳାଇଗଲା, ସେ ଜଟିଳ ସମସ୍ୟାର ସମାଧାନ ସେମାନେ କରି ପାରିଲେ ନାହିଁ । ରାଜାଙ୍କୁ ନ କହିବ ଉପାୟ ନ ଥିଲା । ରାଜାଙ୍କୁ ସବୁ କହିଲେ ।

ପରଦିନ ସବୁ ଶୁଣି ରାଜା ପୁରୁଣା ଚୋରକୁ କହନ୍ତେ ସେ କହିଲା, "ମହାରାଜ, ଏ ଦୁଇ ଚୋର ଭୀଷଣ ଧୂର୍ତ୍ତ । ଏମାନଙ୍କୁ ଧରିପାରିବେ ନାହିଁ । ଆପଣ ପ୍ରଚୁର ପୁରସ୍କାର ଘୋଷଣା କରି ସେମାନଙ୍କୁ ଆତ୍ମ-ସମର୍ପଣ କରିବାକୁ କହନ୍ତୁ, କିଛି ଦଣ୍ଡ ଦେବେ ନାହିଁ ବୋଲି ପ୍ରତିଶ୍ରୁତି ଦିଅନ୍ତୁ ।"

ରାଜା ତାହାହିଁ କଲେ । ଚୋର ଦୁଇ-ଜଣ ଧରାଦେଲେ ଓ ପୁରସ୍କାର ଟଙ୍କାରେ ବ୍ୟବସାୟ କରି ଚଳିଲେ ।



# ଫଟୋ-ପରିଚୟ-ପ୍ରତିଯୋଗିତା: ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ସେପ୍‌ଟେମ୍ବର ୧୯୮୩ ସଂଖ୍ୟାରେ ପ୍ରକାଶ ପାଇବ







M. Natarajan A. Syed

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଶବ୍ଦ ଧାଡ଼ରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ

★ ଜୁଲାଇ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।

★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ ।

★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ (ସେଥିରେ ଅନ୍ୟ କଥା ରହିବା ଅନୁଚିତ) ଜହ୍ନମାମୁଁ ଫଟୋ ପରିଚୟ ପ୍ରତିଯୋଗିତା, ଚନ୍ଦାମାମା ବିଲ୍ଡିଙ୍ଗ୍‌ସ, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ମେ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ଦେଖିହୋ ଯୁଗ କି ଓଲଟା, ମାଛ ମାରିନେଲା ପିଲଟା !

ଦ୍ୱିତୀୟ ଚିତ୍ର : ଗୃହି ଗୃହି ହେଲ ଜଳକା, କି ଅଛି ମୋଲଗି ବଳକା !!

ପୁରସ୍କାର ବିଜୟିନୀ : ଶ୍ରୀମତୀ ଅନୁରାଧା ଦାସ, କଣ୍ଟାବଣିଆ, ଛତ୍ରପଡ଼ା ।

ବିଜୟିନୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 188, Arcot Road, Madras-600 026 (India). Controlling Editor: NAGI REDDI.

ଆପଣଙ୍କ କେଶ
ଆବଶ୍ୟକ କରେ

# ରୀଠାର ଯତ୍ନ

ରୀଠା ଏକ ଉତ୍କୃଷ୍ଟ କେଶ ପ୍ରସାଧନ ସାମଗ୍ରୀ ଅତ୍ୟଧିକ ମାତ୍ରାର ନିର୍ଯ୍ୟାସରେ ପ୍ରସ୍ତୁତ ଓ ମନମତାଣିଆ ସୁଗନ୍ଧଯୁକ୍ତ । ଏହା ବିଳାସମୟୀ ପ୍ରାକୃତିକ କେଶ ବଢାଇବା ଓ ମସ୍ତିଷ୍କ ଥଣ୍ଡା କରିବା ନିଶ୍ଚିତ । ରୀଠା ପୁରୁଷ ଓ ମହିଳା ଉଭୟଙ୍କ ପାଇଁ ଏକ ଆଦର୍ଶ ପ୍ରସାଧନ ଦ୍ରବ୍ୟ ।







ରୀଠା ମନୋହର କେଶ ବଢ଼ାଏ
ଆଜି ଏକ ବୋତଲ କିଣନ୍ତୁ
ସବୁଠାରେ କିଣିବାକୁ ମିଳୁଛି

ଭେଚୋ କୋ:, ବମ୍ବେ * କଲିକତା * ମାନ୍ଦ୍ରାଜ

**Results of Chandamama—Camlin Colouring Contest No. 29 (Oriya)**

*1st Prize:* Miss Alka Panda, Bhubaneswar-751 001. *2nd Prize:* Master Surjyanarayan Kar, Bhubaneswar-751 004. Sucharita Mohapatra, Bhubaneswar. Master Kamal Mishra, Puri-1. *3rd Prize:* Sruti Palit, Cuttack-12. Sri Dipak Kumar Mishra, Rourkela-12. Prem Raj Lenka, Kusapange. Ajaya Kumar Panda, Sabaranga. Amerndra Patnaik, Balasore. Raj Sopal Adhari, Rourkela-6. Biraja Mohan Chandak, Kendrapara-754 211. Sri P. K. Bhattachariee, Ahopada. Robin Vishoye, Bhubaneswar. Sri Sisir Kumar Barik, Odagaon.